ମନୁ ଦାଶ



# ଜଣେ ଆତଙ୍କବାଦୀ ସହ ଗୋଟିଏ ସନ୍ଧ୍ୟା



# ଜଣେ ଆତଙ୍କବାଦୀ ସହ ଗୋଟିଏ ସନ୍ଧ୍ୟା

(ମିନିଗଳ୍ପ ସଂକଳନ)

## ମନୁ ଦାଶ

ପ୍ରକାଶକ :
**ଅଗ୍ନି**
ପ୍ଲଟ ନଂ-୧୦୪୬ ଡି, ଚଣ୍ଡିମାତା କଲୋନି,
ରସୁଲଗଡ଼, ଭୁବନେଶ୍ୱର-୧୦

ପ୍ରଥମ ସଂସ୍କରଣ : ୨୦୧୨

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୬୦ଟଙ୍କା

**JANE AATANKABADI SAHA GOTIE SANDHYA**

by **Manu Dash**

Publisher :
**Agni**
Plot No-1046 D, Chandimata Colony,
Rasulgarh, Bhubaneswar-10

First Edition :
2012

Printed at :
Apurba Off-Set,
Bhubaneswar-751 010

Cover Design :
Kshirod C. Pati

**Price : Rs.60 /-(Sixty only)**

## -ଉତ୍ସର୍ଗ-

*ଟିକିନା*

*ତଥା*

*ଜିଟୁ, ଜୁଲି ଓ ଜ୍ୟାକିଙ୍କୁ*

# କୃତଜ୍ଞତା

*ଏହି ବହିରେ ସ୍ଥାନିତ ଅଧିକାଂଶ ମିନିଗଳ୍ପ ନିମ୍ନଲିଖିତ ପତ୍ରିକାମାନଙ୍କରେ ବିଭିନ୍ନ ସମୟରେ ପ୍ରଥମେ ସ୍ଥାନ ପାଇଥିବାରୁ ଉକ୍ତ ସଂପାଦକମାନଙ୍କୁ କୃତଜ୍ଞତା :*

*ସାହିତ୍ୟ ପୃଥିବୀ*

*ଦି ସଣ୍ଡେ ଇଣ୍ଡିଆନ୍*

*ସମାଜ*

*ଅପୂର୍ବା*

*ପରିଚୟ*

*ପଶ୍ଚିମା*

*ନବଲିପି*

*ଓ*

*ପକ୍ଷୀଘର ।*

*-ମନୁ ଦାଶ*

# କଥାକ୍ରମ

# ପକେଟ ମାର୍

ସନ୍ଧ୍ୟାରେ ସେ ଉଲ୍ଲସିତ ହେଇ ଟେଲିଫୋନ୍ କଲା ନିକଟରେ ସଂପର୍କ ଗଢ଼ି ଉଠିଥିବା ଗାର୍ଲଫ୍ରେଣ୍ଡକୁ ତା'ର ଚାକିରିରେ ହୋଇଥିବା ପ୍ରମୋଶନ୍‌କୁ ସେଲିବ୍ରେଟ୍ କରିବା ଉଦ୍ଦେଶ୍ୟରେ । କଥାନୁସାରେ ସେମାନେ ପରସ୍ପରକୁ ଭେଟିଲେ ସହରର ଉପାନ୍ତରେ ଥିବା ଏକ ଶୋଭନୀୟ ରେଷ୍ଟୋରାଁ ସାମ୍ନାରେ । ଭେଟୁ ଭେଟୁ ଦୁହେଁ ହେଲେ ନିବିଡ଼ ଆଲିଙ୍ଗନବଦ୍ଧ ।

ସେ ପାଛୋଟି ନେଲା ବାନ୍ଧବୀକୁ ରେଷ୍ଟୋରାଁର କୋଣରେ ଥିବା ନିର୍ଜନ ଟେବୁଲ୍ ପାଖକୁ । ଅନେକ ସମୟ ଯାଏ ଗପି ଚାଲିଥାନ୍ତି ଦୁହେଁ । ସେଥିରେ ଥାଏ, କେମିତି ସେ ରେଳ-ଷ୍ଟେସନ୍‌ରେ ପ୍ରଥମ ଦେଖାରେ ହିଁ ପଡି ଯାଇଥିଲା ପ୍ରେମରେ-ତାର ପୁନରାବୃତ୍ତି ! ବେଶ୍ ଗମ୍ଭୀର ହେଇ ଶୁଣୁଥାଏ ବାନ୍ଧବୀ ।

ଭୋଜନ ଶେଷ ହେବାପରେ ବୟଟି ଆଣି ଦେଇଗଲା ବିଲ୍ । ମାତ୍ର ପଛ ପକେଟ୍‌ରେ ହାତ ମାରି ସେ ଜାଣି ପାରେ ଯେ ପକେଟ୍‌ମାର୍‌ର ଶୀକାର ହେଉଛି ସେ । କିଂ କର୍ତ୍ତବ୍ୟ ବିମୂଢ଼ ପାଲଟି ଯାଏ ସେ । ମାତ୍ର ଏତାଦୃଶ ବ୍ୟବହାରରେ ଆଦୌ ବିଚଳିତ ହୁଅନ୍ତି ନାହିଁ ରେଷ୍ଟୋରାଁର ମାଲିକ । ତାଙ୍କରି ଆଦେଶ କ୍ରମେ କିଛି ପରିଚାଳକ ତାକୁ ନେଇଗଲେ ଅଳ୍ପ ଦୂରର ନିର୍ଜନ କୋଠରୀକୁ । ସଂପୂର୍ଣ୍ଣ ବିବସ୍ତ୍ର କଲେ ଏବଂ ତନ୍ନ ତନ୍ନ ଖୋଜି ଚାଲିଲେ ମନିପର୍ସକୁ । ମାତ୍ର ପର୍ସ ନ ମିଳିବାରୁ ସେମାନେ ଫେରି ଆସି ଜଣାଇ ଦେଲେ ମାଲିକଙ୍କୁ ।

ସେ ହତଭମ୍ବ ହେଇଗଲା ଏପରି ବ୍ୟବହାରରେ । ବାନ୍ଧବୀର ଆଖି ବି ଜକେଇ ଗଲା ଅପମାନରେ । ସେ ତତ୍‌କ୍ଷଣାତ୍ ଉଠି ଠିଆହେଲା । ନିଜ ଭ୍ୟାନିଟ୍‌ରୁ ବିଭିନ୍ନ ରଂଗ ଆଉ ଆକୃତିର ଡର୍ଜନେ ମନିପର୍ସ ଟୋଳି ଧରିଲା ତା' ସାମ୍ନାରେ ।

: ୟା' ଭିତରେ କେଉଁଟା ତମର ? ପଚାରିଲା ବୟଫ୍ରେଣ୍ଡ୍‌କୁ ।

ସେ ଅବାକ୍ ହେଇ ଚାହିଁଥାଏ ଗାର୍ଲଫ୍ରେଣ୍ଡ୍‌କୁ ।



# ସ୍ନାନ

ଅନେକ ଦିନ ଧରି ସେ ସ୍ୱପ୍ନଟିକୁ ଭୁଲି ପାରୁ ନଥିଲା। ମାତ୍ର ଥରଟିଏ ସେ ସ୍ୱପ୍ନ ତା ନିଜ ଭିତରକୁ ପଶି ଆସିଥିଲା। ବାସ୍ ତା' ପରଠୁଁ ରହିଗଲା ତା ମନ ଭିତରେ। ସ୍ୱପ୍ନଟି ଥିଲା ଏହିପରି- ଗ୍ରୀଷ୍ମଋତୁର ଏକ ମଧ୍ୟାହ୍ନରେ ସେ ବାଥ୍‌ରୁମ୍‌ରେ ସଂପୂର୍ଣ୍ଣ ଉଲଗ୍ନ ହୋଇ ସ୍ନାନ କରୁଛି ଓ ପରେପରେ ବିନା ବସ୍ତ୍ରରେ ବାଥ୍‌ରୁମ୍‌ରୁ ବାହାରି ସେ ତା' ବେଡ୍‌ରୁମ୍‌କୁ ଯାଉଛି, ଅଥଚ ବେଡ଼୍‌ରୁମ୍ ଓ ବାଥ୍‌ରୁମ୍‌କୁ ସଂଯୋଗ କରୁଥିବା ସ୍ଥାନଟିରେ ଥିବା ଡାଇନିଂ ଚେୟାରରେ ବସିଥିବା ପରିବାରର ସଦସ୍ୟମାନେ ତାକୁ ଯିବା ସମୟରେ ଯଦିଓ ଦେଖିଛନ୍ତି ମାତ୍ର ସେମାନେ କୌଣସି ପ୍ରତିକ୍ରୀୟା ପ୍ରକାଶ କରୁ ନାହାନ୍ତି ।

ଏହାର ଅନେକଦିନ ପରେ ହଠାତ୍ ଦିନେ ସେ ବାଥ୍‌ରୁମ୍‌ରେ ସଂପୂର୍ଣ୍ଣ ଉଲଗ୍ନ ହୋଇ ଗାଧୋଇଥିବା ସମୟରେ ସେଇ ଅବସ୍ଥାରେ ଦୁଆରଖୋଲି ବେଡ୍ ରୁମ୍‌ରେ ପ୍ରବେଶ କଲା ଏବଂ ଚୁପ୍‌ଚାପ୍ ଯାଇ ପଲଙ୍କରେ ଶୋଇ ପଡ଼ିଲା ।

ସେ ଦେଖି ପାରିଲା ବାଥ୍‌ରୁମ୍‌ରେ ବେଡ୍‌ରୁମ୍‌କୁ ଯିବା ସମୟରେ ଡାଇନିଂ ଚେୟାର୍‌ରେ ବସିଥିବା ପରିବାର ସଦସ୍ୟମାନେ ତଟସ୍ଥ ହୋଇ ତାକୁ ଚାହିଁଥିଲେ ସ୍ୱପ୍ନରେ ଚାହିଁବା ପରି ।

ଏ କଥା ଭାବୁ ଭାବୁ ସେ ନିଘୋଡ଼ ନିଦରେ ଶୋଇ ପଡ଼ିଲା ପଲଙ୍କ ଉପରେ ।



# ଆଲବମ୍

ଏଇଁଠି କିଛି ଘଟଣା କହେ । ଯେଉଁଠି ଦୁର୍ଘଟଣା ଘଟିବ ସେଠି ସେ ନିଶ୍ଚୟ ଥିବେ ହୋଇପାରେ ମାଗଣା ଚକ୍ଷୁ ଚିକିତ୍ସା ଶିବିର ଉଦ୍‌ଘାଟନ, ମନ୍ତ୍ରୀଙ୍କ ଜିଲ୍ଲା ବିକାଶ ଯୋଜନାର ରିଭ୍ୟୁ ଅଥବା ସଡ଼କ ଦୁର୍ଘଟଣା ଜନିତ ରାସ୍ତାରୋକୋ ଆନ୍ଦୋଳନ-ସବୁଠି ସେ ଥା'ନ୍ତି । ସବୁ ଘଟଣା / ଦୁର୍ଘଟଣାର ଫଟୋ ତାଙ୍କ ପାଖରେ ମହଜୁଦ୍ ରହିଛି ଥାକ ମରା ହେଇ ଥିବା ଆଲବମ୍‌ମାନଙ୍କରେ ।

ତାଙ୍କ ଫଟୋ ତାଙ୍କ ଜୀବନୀ । ସେ ଗର୍ବ କରନ୍ତି, ଘରକୁ ଆସୁଥିବା ଅଭ୍ୟାଗତଙ୍କୁ ତାଙ୍କ ଫଟୋ ସହ ଜଡ଼ିତ ଘଟଣା ସବୁକୁ ସଗର୍ବେ ଅବତାରଣା କରନ୍ତି ।

ଅସଲରେ ସେ ଫଟୋରେ ରହିବା ଲାଗି ଆପ୍ରାଣ୍ ଉଦ୍ୟମ କରୁଥାନ୍ତି । ଘଟଣା ସହ ତାଙ୍କର ସଂପୃକ୍ତି ଥାଏ କମ୍ ଅଥବା ଆଦୌ ନଥାଏ ।

ଏ କଥା ତାଙ୍କ ସ୍ତ୍ରୀଙ୍କୁ ଜଣାଥାଏ । ସ୍ୱାମୀଙ୍କ ଅପାରଗ ପଣିଆର ସେ ଏକ ମୂକ ସାକ୍ଷୀ । ଯେତେବେଳେ ସେ ଆଗନ୍ତୁକମାନଙ୍କୁ ତାଙ୍କ ଡ୍ରଇଁରୁମ୍‌ରେ ଆଲବମ୍ ଦେଖାଇ ନିଜ ପାରିବା ପଣିଆର ଦଲିଲ୍ ପେଶ୍ କରୁଥାନ୍ତି, ପରଦା ଆଢୁଆଳରେ ଥାଇ ପତ୍ନୀ ମୁରୁକି ହସୁଥାନ୍ତି ।

ସେ ହସ ତାଙ୍କ ଶିରା ପ୍ରଶିରାରେ ବିଷ ପରି ଚରିଯାଏ ।

❑❑❑

# ହଳେ ଯୋତା

ଅନେକ ବର୍ଷପରେ ସେଇ ନିର୍ଜନ ରାସ୍ତାଦେଇ କାର୍‌ରେ ସଂଧ୍ୟାବେଳେ ଫେରୁଥିବାବେଳେ ତାଙ୍କୁ ହଠାତ୍ ପରିସ୍ରା ଲାଗିଲା । ଡ୍ରାଇଭର ଗାଡ଼ି ଅଟକାଇବା ପରେ ସେ ପଦାକୁ ବାହାରିଲେ । ଅଳ୍ପ ଦୂରରେ ଥିବା ଝଙ୍କାଳିଆ ଗଛଟିକୁ ଦେଖି ସେ ଚମକି ପଡ଼ିଲେ ।

ପ୍ରାୟ ପଚିଶ ବର୍ଷ ତଳେ ଏଇଠି ଦିନେ ମୁହଁ ସଂଜବେଳେ ତିନିବଂଧୁ ଅଟକି ଥିଲେ ପରିସ୍ରା କରିବା ଲାଗି । ବିଅର ନିଶାରେ ସେମାନେ ସମସ୍ତେ ଥିଲେ ଚୁର୍ । ଗାଡ଼ିରୁ ବାହାରି ସେ ଗଲେ ରାସ୍ତାର ବାଁ କଡ଼କୁ, ପ୍ରଥମ ବନ୍ଧୁ ଚାଲିଲେ ଡାହାଣପଟକୁ । ଦ୍ୱିତୀୟ ବନ୍ଧୁଗଲେ ଗାଡ଼ିର ପଛପଟକୁ । କିଛି ସମୟପରେ ସେ ଏବଂ ପ୍ରଥମ ବନ୍ଧୁ ଫେରି ଆସିଲେ ଗାଡ଼ିପାଖକୁ । ଅପେକ୍ଷା କଲେ ଦ୍ୱିତୀୟ ବନ୍ଧୁଙ୍କୁ । ମାତ୍ର ଅନେକ ସମୟ ଯାଏ ଦ୍ୱିତୀୟ ବନ୍ଧୁ ନ ଆସିବାରୁ ସେ ଓ ପ୍ରଥମ ବନ୍ଧୁ ଗାଡ଼ିରୁ ବାହାରି ପଛକୁ ଚାହିଁଲେ । କିଛି ବି ସୁରାକ୍ ମିଳୁ ନ ଥାଏ । ଦୁହେଁ ଚାଲିଚାଲି ସେ ଗଛ ପାଖକୁ ଗଲେ । ପଛ ପଟରୁ ନାଁ ଧରି ଡାକିଲେ । ତଥାପି ଉତ୍ତର ନାହିଁ । ମୁହୂର୍ତ୍ତକ ପରେ ସେ ଦୁହେଁ ସାମ୍ନାରେ ଗଛ ଉପରେ ଚାହିଁ ଅବାକ୍ ହୋଇଗଲେ । ଗଛ ଡାଳରେ ଲଟକିଥିବା ଏକ ଅଜଗର ସାପ ଦ୍ୱିତୀୟ ବନ୍ଧୁଙ୍କୁ ପରିସ୍ରା କରୁଥିବାବେଳେ ପୁରାପୁରି ଶୋଷି ଦେଇଛି । ସାରା ଶରୀର ଚାଲିଯାଇଛି ପେଟ ଭିତରକୁ । କେବଳ ନିକଟରେ କିଣିଥିବା ନୂଆ ଜୋତା ହଳକ ଅଜଗରର ପାଟି ବାହାରେ ରହିଛି ।

ପଚିଶ ବର୍ଷ ପରେ ଅକସ୍ମାତ ଆଜି ସେଇ ଗଛମୂଳେ ସେ ପରିସ୍ରା ନକରି ଗାଡ଼ି ପାଖକୁଚାଲି ଆସିଲେ ଏବଂ ତାଙ୍କୁ ଲାଗିଲା ଏବେ ବି ହଳେ ଯୋତା ସେଇମିତି ସେ ଗଛ ଡାଳରେ ଝୁଲୁଛି ।



# ବାହାନା

ପ୍ରାୟ ଚାଳିଶବର୍ଷ ପରେ ଦୁଇ ବଂଧୁ ପରସ୍ପରକୁ ଭେଟିଲେ ସହର ଉପକଣ୍ଠରେ ଥିବା ରେଲୱେ ଟ୍ରାକ୍ ଉପରେ ଆତ୍ମହତ୍ୟା କରିବାକୁ ଆସିଥିବାବେଳେ । ପ୍ରଥମ ଜଣକ, ଯିଏ ଜଣେ ସ୍କୁଲ ମାଷ୍ଟ୍ରଭାବେ ଅବସର ନେଇଥିଲା ଖୁବ୍ ନିଟକରେ, କହିଲା: "ପିଲାଗୁଡ଼ାଙ୍କ ପାଇଁ କିଛି କରିପାରିଲିନି । ସେଇ ଗ୍ଲାନିରେ ଏବେ ମୁଁ ଆସିଛି ମରିବାକୁ ।" ଦ୍ୱିତୀୟ ଜଣକ, ଯିଏ ଭାରତୀୟ ପ୍ରଶାସନିକ ସେବାରୁ କିଛିମାସ ତଳେ ସେବାନିବୃତ୍ତ ହୋଇଥିଲା, କହିଲା ଥଙ୍ଗ୍ ଥଙ୍ଗ୍ ହେଇ : 'ମୋ ଦୁଃଖ ଅଲଗା । ସବୁ ସୁଖ ପିଲାମାନଙ୍କୁ ଦେଲି । ତଥାପି ସେମାନେ ମୋ' ଉପରେ ସବୁବେଳେ ଗର ଗର । ଭାବିଲି ଏ ଜୀବନ ନିରର୍ଥକ । ତେଣୁ ଏଠିକି ଆସିଛି ପ୍ରାଣବଳି ଦେବାକୁ ।"

ପ୍ରଥମଟି ଧ୍ୟାନମଗ୍ନହେଇ ଦ୍ୱିତୀୟର କଥା ଶୁଣିଲା ଏବଂ ତତ୍କ୍ଷଣାତ୍ ନିଜର ନିଷ୍ପତ୍ତି ବଦଳାଇ ଘରକୁ ବାହୁଡ଼ିଗଲା । ସେତିକିବେଳେ ଦୂରରୁ ନିକଟତର ହେଉଥିଲା ଗୋଟେ ମାଲ୍‌ଗାଡ଼ିର ହ୍ୱିସିଲ୍ ।



# ପେଟ୍ରୋଲ

ସହରରେ ଏବେ ସେ ଜଣେ ଆଗାଧାଡ଼ିର କବି । ସବୁ ସଭା ସମିତି, ସବୁ ପତ୍ର ପତ୍ରିକାରେ ତାଙ୍କ ଉପସ୍ଥିତି ବାରି ହୋଇ ପଡୁଥିଲା ।

ତାଙ୍କ କାବ୍ୟିକ ସଫଳତାର ରହସ୍ୟଟି ଥିଲା ଏହିପରି । ଯେଉଁ ପତ୍ରିକାର ସଂପାଦକଙ୍କୁ ସେ ଦେଉଥିଲେ କବିତାଟିଏ, ତା' ସହିତ ଗୁଞ୍ଜିଦେଉଥିଲେ ସେ ତାଙ୍କ ସଂସ୍ଥାର ଏକ ବିଜ୍ଞାପନ ସହ ଏକ ହଜାର ଟଙ୍କାର ଆକାଉଣ୍ଟପେଇ ଚେକ୍ । ସେ ଉକ୍ତ ସଂସାର ଥିଲେ ବରିଷ୍ଠ ଅଧିକାରୀ।

ଅବଲୀଳାକ୍ରମେ, ଦିନେ ସେ ସରକାରୀ ଚାକିରିରୁ ଅବସର ନେଲେ । ଆଗଭଳି ଆଉ ବାହାରିଲାନି ତାଙ୍କ କବିତା କୌଣସି ପ୍ରତିକାରେ କିମ୍ବା ପୃଷ୍ଠପୋଷକତା କରୁଥିବାର ତାଙ୍କୁ ଦେଖା ଗଲାନି କୌଣସି ରାଜଧାନୀର ସାହିତ୍ୟ ସଭାରେ ।

ଜଣେ କବି ବନ୍ଧୁ କଥା ଲହସରେ ଉଗାଳି ପକାଇଲେ : ବିଜ୍ଞାପନଟା ତାଙ୍କ ମସ୍ତିଷ୍କ ପାଇଁ ପେଟ୍ରୋଲ ପରି କାମ କରୁଥିଲା ।



# ମଙ୍ଗଳବାର

ଆଜି ମଙ୍ଗଳବାର ।

ସକାଳୁ ଉଠି ସେ ବାହାର କବାଟ ଖୋଲିଲେ । ଘର ସାମ୍ନା ବଗିଚାରେ ଚାରି ପାଞ୍ଚଟି ମାଙ୍କଡ଼ ବସିଥିବାର ଦେଖି ସେ ଘର ଭିତରକୁ ଚାଲିଗଲେ ଏବଂ ଆଞ୍ଜୁଳାଏ ଚଣା ଆଣି ବଗିଚା ଆଡ଼େ ଫିଙ୍ଗି ଦେଲେ । ମାଙ୍କଡ଼ ସବୁ ଆନନ୍ଦରେ ଟାକୁ ଟାକୁ କରି ଚଣା ଗିଳୁଥିବାର ଦୃଶ୍ୟ ତାଙ୍କୁ ଖୁବ୍ ଆନନ୍ଦ ଦେଉଥାଏ । ତା' ପରେ ଗାଧୋଇ ପାଧୋଇ ସେ ଚାଲିଲେ ସହରର ଆର ଗଳିରେ ଥିବା ଶ୍ରୀରାମ ମନ୍ଦିରକୁ । ନାନାଦି ମନ୍ତ୍ରସବୁ ଆଖି ବନ୍ଦ କରି ଜପିଲେ ଅନେକ ସମୟ ଧରି, ଏକାଗ୍ର ଚିତ୍ତରେ ।

ଅତିକ୍ରାନ୍ତ ଅପରାହ୍ନରେ ଆଖି ଖୋଲିଲେ ଓ ଚାରିଆଡ଼କୁ ଦୃଷ୍ଟି ପକାଇଲେ । ସେଇଠୁ ଉଠି ସିଧା ଚାଲିଲେ ଅଳ୍ପ ଦୂରରେ ଥିବା ହନୁମାନ ମନ୍ଦିରକୁ । ସେଠି ଭକ୍ତଙ୍କ ଭିଡ଼ ଜମିଥାଏ, ପୂଜାର୍ଚ୍ଚନା ବି । ସେ ଉଦାତ୍ତ କଣ୍ଠରେ କହିଲେ, ମୁଁ ଥାଉ ଥାଉ ଏ ପଥର ମୂର୍ତ୍ତିକୁ ପୂଜା କରିବାର ମାନେ କ'ଣ ?' ଲୋକେ ତାଙ୍କ କଥା ଆଶ୍ଚର୍ଯ୍ୟ ହୋଇ ଶୁଣୁଥିଲେ ।

ହଠାତ୍ ଜଣେ ସାଷ୍ଟାଙ୍ଗ ପ୍ରଣିପାତ କଲା ତାଙ୍କୁ । ଜଣ ଜଣ କରି ସବୁ ଭକ୍ତ ପୂଜା କଲେ ତାଙ୍କୁ । ଫୁଲ ବି ଚଢ଼ାଇଲେ, ଧୂପ ଦେଲେ ।

ଏକଥା କାନକୁ କାନ ଯାଇ ପହଞ୍ଚିଲା ଟିଭି ସାମ୍ବାଦିକଙ୍କ ପାଖରେ । ସବୁ ଚାନେଲ ତଳେ କ୍ରମେ ପ୍ରସାରିତ ହେଲା ସେ ଖବର । ଖବର ପଢ଼ି ତାଙ୍କ ପରିବାର ଲୋକେ ତୁରନ୍ତ ଘଟଣାସ୍ଥଳରେ ପହଞ୍ଚି ତାଙ୍କୁ ଉଠାଇ ନେଲେ ସହରର ସବୁଠାରୁ ନାମକରା ସାଇକ୍ରିଆଟିଷ୍ଟଙ୍କ ପାଖକୁ । ସାଇକ୍ରିଆଟିଷ୍ଟଙ୍କ କ୍ଲିନିକ ବନ୍ଦ ଥିଲା । କାରଣ ଆଜି ମଙ୍ଗଳବାର ।



# ତାଲିକା

ସକାଳୁ ଉଠି ସେ ପାଇଥିବା ନୂଆ କମ୍ପାନୀର ଇଣ୍ଟରଭ୍ୟୁ ପତ୍ର ପୁଣି ଥରେ ପଢ଼ିଲା ଏବଂ ସାକ୍ଷାତକାର ପାଇଁ ଯିବା ଆଗରୁ ତା'ର ଦରମା ଓ ଅନ୍ୟାନ୍ୟ ସୁବିଧାର ଏକ ଲମ୍ବା ତାଲିକା ତିଆରି କରିବା ଲାଗି ବସି ପଡ଼ିଲା ।

ବାପା ନିଦରୁ ଉଠି ସାରିଥିଲେ ଆଗରୁ । ତାରିଖ ନିର୍ଧାର୍ଯ୍ୟ ହୋଇସାରିଥିବା ପୁତ୍ରର ବିବାହୋତ୍ସବ ପାଇଁ ଆଗକୁ କ'ଣ ସବୁ କରିବାକୁ ହେବ ତା'ର ଏକ ତାଲିକା କରୁଥିଲେ ଯେଉଁଥିରେ ନିମନ୍ତ୍ରଣପତ୍ର ଛାପିବାଠାରୁ ଆରମ୍ଭ କରି ଆମନ୍ତ୍ରଣକାରୀଙ୍କ ନାମ, ବିବାହ ସାମଗ୍ରୀ ଓ ଭୋଜି ଉପକରଣ ଇତ୍ୟାଦି ସ୍ଥାନ ପାଇବାର ଥିଲା ।

ରୋଷେଇଶାଳାରେ ମା' ସକାଳୁ ସକାଳୁ ମାସିକ ସଉଦା ଆଣିବା ଲାଗି ସବୁ ଜିନିଷର ତଦାରଖ କରିବା ପରେ ଏକ ତାଲିକା କରୁଥିଲେ ।

ବିଶ୍ୱର ଏକ ନିଭୃତ କୋଣରେ ଚୁପ୍‌ଚାପ୍ ବସି ଈଶ୍ୱର ସେମାନଙ୍କ ଭବିଷ୍ୟତ କାର୍ଯ୍ୟକ୍ରମର ଏକ ଦୀର୍ଘ ତାଲିକା ତିଆରି କରି ସାରିଥିଲେ ଆନେକ ଆଗରୁ ।



# ଶୋକ ସମ୍ବାଦ

କବିବନ୍ଧୁଙ୍କ ମୃତ୍ୟୁ ପରେ, ତାଙ୍କୁ ଯେତେବେଳେ ଏକ ସମ୍ଭ୍ରାନ୍ତ ଖବର କାଗଜର ସମ୍ପାଦକ କବିଙ୍କ ସମ୍ମାନାର୍ଥେ ଏକ ଲେଖାଦେବା ପାଇଁ ଅନୁରୋଧ କଲେ, ସେ ସେଇଦିନ ରାତିରେ ଆଠ ପୃଷ୍ଠା ସମ୍ବଳିତ ଲେଖାଟି ସମ୍ପାଦକଙ୍କୁ ପଠାଇ ନିଜକୁ ଆଶ୍ୱସ୍ତ ମନେ କଲେ ।

ଲେଖାଟିରେ ସାଢ଼େ ସାତପୃଷ୍ଠା ନିଜର ପ୍ରଶସ୍ତି କରିବା ପରେ ସେ ପାଖାପାଖି ଅଧପୃଷ୍ଠାର ଲେଖାରେ ନିଜ ଦିବଂଗତ ବନ୍ଧୁଙ୍କୁ ସ୍ମରଣ କରିଥିଲେ ଯେଉଁଥିରେ ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା କଥା ମଧ୍ୟ ଭୁଲି ଯାଇଥିଲେ ।

ମାତ୍ର ଲେଖାପଢ଼ି ତାଙ୍କ ପ୍ରିୟ ପାଠକମାନେ ଏକ ନିଷ୍କର୍ଷରେ ପହଞ୍ଚି ଯାଇଥିଲେ ଯେ ଜଣେ ଲେଖକ ଭାବେ ତାଙ୍କ ମୃତ୍ୟୁ ହୋଇସାରିଛି ଏବଂ ଲେଖାଟି ନିଜ ସମ୍ପର୍କିତ ଶୋକ ସମ୍ବାଦର ଏକ ପ୍ରତିଲିପି ମାତ୍ର ।



# ନାହୁଡ଼

ଦଶମ ଶ୍ରେଣୀରେ ପଢୁଥିବା ପୁଅକୁ ନିସିମ୍ ଇଜାକିଲ୍‌ଙ୍କ କବିତା 'ନାଇଟ୍ ଅଫ୍ ଦି ସ୍କର୍ପିୟନ୍' ପଢ଼ାଉ ପଢ଼ାଉ ତା'ର ବାପା ଶେଷ ଦୁଇ ପଂକ୍ତି ପାଖରେ ହଠାତ୍ ଭାବ ବିହ୍ୱଳ ହେଇଗଲେ । ଶେଷ ଧାଡ଼ିଟି ଥିଲା ଏହିପରି; 'ଈଶ୍ୱରଙ୍କୁ ଧନ୍ୟବାଦ, ସେ ମୋ ପିଲାଙ୍କୁ ଛାଡ଼ିଦେଲା ।'

ପୁଅର ପାଠପଢ଼ା ଛାଡ଼ି ବାପା ହଠାତ୍ ଅନ୍ୟମନସ୍କ ହେଇଗଲେ । ମନେ ପଡ଼ିଗଲା ହଠାତ୍ ତାଙ୍କର ଜଣେ ସହକର୍ମୀଙ୍କ କଥା । ବୃଦ୍ଧ ପିତାମାତାଙ୍କୁ ଅବହେଳା କରି ସହକର୍ମୀ ଓ ତାଙ୍କ ଅନୁଜ ପିତୃ ସଂପତ୍ତି ପାଇଁ କଳହରେ ମାତିଥାନ୍ତି । ଘର କଥା ଦାଣ୍ଡକୁ ନ ଯାଉ ଭାବି ବୃଦ୍ଧ ପିତା ଦୁଇ ପୁତ୍ରଙ୍କୁ ସମାନ ଭାଗରେ ବାଣ୍ଟି ଦେଲେ ନିଜର ସ୍ଥାବର ଓ ଅସ୍ଥାବର ସମ୍ପତ୍ତି । ଦୁଇ ପୁତ୍ର ଚାଲିଲେ ସୁଖ ସନ୍ଧାନରେ ନିଜ ନିଜ ବାଟରେ । ମାତ୍ର ଜୀବନ ଯୁଦ୍ଧରେ ହାରିବା ପରେ ଅନୁତାପ କରି ଦୁଇ ପୁତ୍ର ଯେତେବେଳ ଫେରି ଆସିଲେ ନିଜ ଜନ୍ମମାଟିକୁ ପିତା ସେତେବେଳେ ଥିଲେ ସ୍ୱର୍ଗଲୋକରେ ।

ଅପମାନ, କୃତଘ୍ନତା ଓ ଅବହେଳାର ଦଂଶନଜ୍ୱାଳାକୁ ସହ୍ୟ କରିଥିବା ମାଆ କିନ୍ତୁ ହଠାତ୍ କହି ପକାଇଲେ: ସାରା ଦୁନିଆ ବୁଲିବୁଲି ଥକି ପଡ଼ିଥିବା ପୁଅମାନେ ମୋ ନୀଡ଼କୁ ଫେରିଛନ୍ତି । ଈଶ୍ୱରଙ୍କୁ ଅନେକ ଅନେକ ଧନ୍ୟବାଦ ।'

ମାଆର ଏଇ କଥା କେଇପଦ ଶୁଣି ଈଶ୍ୱରଙ୍କ ଆଖିରୁ ଝରିପଡ଼ିଲା ବୁନ୍ଦାଏ ଲୁହ, ଲାଜରେ ।



# ଧ୍ୱନି

ସବଳ ସାଧାରଣତଃ ଦୁର୍ବଳ ଉପରେ ଅତ୍ୟାଚାର କରିବା ଏକ ପ୍ରାକୃତିକ ନିୟମ ବୋଲି କୁହାଯାଏ । ଯେମିତି ବଡ଼ ମାଛଟି ଛୋଟ ମାଛକୁ ଏବଂ ବୁଢ଼ିଆଣି ତା'ର ଛୁଆଙ୍କୁ ଖାଇଯାଏ ।

ଏଇ କଥା ଭାବୁ ଭାବୁ ସେ ପ୍ରଥମ ଦିନ ତା ଚାକିରି ସ୍ଥାନରେ ପହଞ୍ଚିଲା । କାରଖାନାଟି ଥିଲା ପୁରୁଣା । ସେ ଯେଉଁ ବଏଲର୍ ହାଉସ୍‌ରେ କାମ କରିବାକୁ ପହଞ୍ଚିଲା, ସେଠି ଶବ୍ଦ ପ୍ରଦୂଷଣର ପ୍ରାର୍ଦୁଭାବ ଥିଲା ଅତ୍ୟଧିକ । ଧ୍ୱନି ଏତେ ପ୍ରବଳ ହେଉଥିଲା ଯେ ସେଠି କେହି କାହାରି କଥା ସହଜରେ ଶୁଣି ପାରୁନଥିଲେ । ଠାରରେ ହିଁ ପରସ୍ପରକୁ ସମ୍ବୋଧନ କରୁଥିଲେ ।

ଦିନସାରା ସେଠି ରହିବା ପରେ ସେ ବଏଲର ହାଉସ୍‌ର ପଦାକୁ ବାହାରି ଆସିଲା । ସେଠୁ ପାହାଚରୁ ଓହ୍ଲାଇ ତଳକୁ ଆସିଲା, ଯାହା ସାମ୍ନାରେ ଥିଲା ଏକ ପ୍ରଶସ୍ତ ରାସ୍ତା । ଅଳ୍ପ ଦୂରରୁ ଦ୍ରୁତଗତିରେ ମାଡ଼ି ଆସୁଥିଲା ଆବର୍ଜନା ବୋଝେଇ ଏକ ଟ୍ରକ୍ । ସେ ଆଡକୁ ତାର ନିଘା ନଥିଲା । ସେ ରାସ୍ତା ପାର ହେବା ବେଳକୁ ଟ୍ରକ୍‌ଟି ହରାଇ ସାରିଥିଲା ବ୍ରେକ୍ । ରାସ୍ତା ମଝିରେ ଶୁଣାଗଲା ଗୋଟେ ଛୋଟିଆ ଶବ୍ଦ : ଆଃ ! ସେଇଟା ଥିଲା ଶେଷ ଧ୍ୱନି ।

ବଡ଼ ଧ୍ୱନିଟି ଭିତରେ ସେ ଛୋଟ ଧ୍ୱନିଟି ମିଳେଇ ଗଲା ଅନନ୍ତ କାଳ ପାଇଁ ।



# ପାଣି

ବାହାଘରଟା ଅଚାନକ ଭାଙ୍ଗିଯିବାରୁ ଗାଁ ସାରା ଗୋଟେ ହସର ଲହରୀ ଖେଳିଗଲା । କନ୍ୟାପକ୍ଷ ଯୌତୁକ ବାବଦକୁ ଦେଇଥିବା ଅଗ୍ରୀମ ବି ଫେରାଇ ନେଲେ । ଗାଁରେ ସବୁଠୁ ଶିକ୍ଷିତ ହୋଇଥିଲେ ବି ଦାମ୍ପତ୍ୟ ଜୀବନ ବିତାଇବାରେ ଆଶା କ୍ଷୀଣ ହେଇ ଆସୁଥିଲା ।

ଗାଁରେ ଅଥବା ଗାଁ ଚାରିପାଖରେ ମାଇଲ୍ ମାଇଲ୍ ଧରି ବୁନ୍ଦାଏ ପାଣି ନଥିଲା ଖରାଦିନେ । ମଦ ଆଉ ଦୁଧଠୁଁ ମହଙ୍ଗା ଥିଲା ପାଣି । ଏପରିକି ପାଣି ଅଭାବରୁ ଗ୍ରୀଷ୍ମ ଋତୁରେ ଚିମିନିରୁ ଧୂଆଁ ବାହାରିବା ଠପ୍ ହୋଇଯାଇଥିଲା ଏକ ଅଦୂରବର୍ତ୍ତୀ କାରଖାନାରେ ।

ଅନେକ ଦିନ ପରେ ଦିଲ୍ଲୀର ଏକ ସମ୍ଭ୍ରାନ୍ତ ସଂସ୍ଥାର ସର୍ଭେ ରିପୋର୍ଟ ପ୍ରକାଶ ପାଇଥିଲା ଯେ ଉକ୍ତ ଅଞ୍ଚଳରେ ପ୍ରାୟ ଶତକଡ଼ା ଅଶି ଭାଗରୁ ଊର୍ଦ୍ଧ୍ୱ ବୃଦ୍ଧ ଥିଲେ ବାଡୁଅ ଓ ଏହା ସେ ଅଞ୍ଚଳ ପାଇଁ ଏକ ସାମାଜିକ ସଂକଟର ରୂପ ନେଇଛି ।

ତଥାପି ସେଇ ଟାଙ୍ଗରା ଭୂଇଁରେ ପାଣିର ଉତ୍କଟ ଅଭାବ ଦୂର କରିବା ପାଇଁ ସରକାର ଥିଲେ ପୂର୍ବଭଳି ଉଦାସୀନ ।



# ଆଟାଚି

ଟ୍ରେନ୍ ଷ୍ଟେସନ୍‌ରେ ହଲ୍ଟ କରିବା ଆଗରୁ ସେ ତରତର ହୋଇ ଚଳନ୍ତା ଗାଡ଼ିରୁ ଓହ୍ଲାଇ ପଡ଼ିଲା ଏବଂ ହାତରେ ଲଟକି ଥବା ଆଟାଚିକୁ ଷ୍ଟେସନରେ ଜନଗହଳି ପ୍ଲାଟଫର୍ମରେ ଥୋଇଦେଇ ତରତର ହେଇ ବାହାରିଗଲା ମୁଖ୍ୟ ଫାଟକ ଦେଇ । ପ୍ଲାଟଫର୍ମରେ ଆଟାଚି ରଖି ଚାଲି ଯାଉଥିବାବେଳେ ତାକୁ ଲକ୍ଷ୍ୟ କରିଥିଲା ଜଣେ ଯୁବକ । ସେ ଫୋଡ଼ିଦେଲା କାନରେ କଥାଟିକୁ ଅଧିକାରୀଙ୍କ, ଚୁପ୍‌କରି । ଅଧିକାରୀ ଘୂରେଇଲେ ଟେଲିଫୋନ୍ । ସମସ୍ତଙ୍କୁ ଆତଙ୍କିତ କରି ପ୍ଲାଟଫର୍ମରେ ଥିବା ଲାଉଡ ସ୍ପିକରରୁ ଘୋଷଣା କରାଗଲା ଯେ ପ୍ଲାଟଫର୍ମରେ ପଡିଥିବା ଆଟାଚିରେ ବୋମା ଅଛି । ଲୋକେ ଖଣ୍ଡେ ଦୂରକୁ ଚାଲିଗଲେ ତତ୍‌କ୍ଷଣାତ୍ । ପୋଲିସ୍ ବି ପହଞ୍ଚିଲା ବୋମା ନିଷ୍କ୍ରିୟ କରିବା ଯନ୍ତ୍ର ସହିତ । ଦୂରରୁ ସମସ୍ତେ ଲକ୍ଷ୍ୟ କରୁଥିଲେ । ପ୍ରାୟ ଦୁଇଘଣ୍ଟା ଯାଏ ବ୍ୟସ୍ତ ରହିଲା ପୋଲିସ୍ ।

ସେ ପୁଣି ଆସି ପହଂଚିଲା ପ୍ଲାଟଫର୍ମରେ ଦାଢ଼ି ସାଉଁଳି ସାଉଁଳି । ଆଟାଚି ପାଖକୁ ଗଲା ଏବଂ ସେଇ ପ୍ଲାଟଫର୍ମ ଦେଇ ବିପରୀତ ଦିଗକୁ ଯାଉଥିବା ଗାଡ଼ିରେ ଚଢ଼ି ତା' ଗନ୍ତବ୍ୟ ସ୍ଥଳକୁ ଫେରି ଗଲାବେଳେ ଭଲ ସିନେମାଟିଏ ଦେଖି ପାରିଥିବାରୁ ତା' ମୁହଁରେ ଆତ୍ମ ତୃପ୍ତିଟିଏ ଝୁଲି ରହିଥିଲା ଅନେକ ସମୟ ଯାଏ ।



# ବହି ଉନ୍ମୋଚନ

ସକାଳୁ ସକାଳୁ ସେ ଖୁବ୍ ଗମ୍ଭୀର ଓ ଚିନ୍ତିତ ଜଣାପଡୁଥିଲେ । ବାରମ୍ବାର ଘରୁ ଦାଣ୍ଡକୁ ଓ ଦାଣ୍ଡରୁ ଘରକୁ ଯାଉଥିଲେ ସେ । ଏଇଥିପାଇଁ ସେ ଚିନ୍ତିତ ନଥିଲେ ଯେ ମୁଖ୍ୟମନ୍ତ୍ରୀ ତାଙ୍କ ବହି ଆଜି ଉନ୍ମୋଚନ କରିବାର କାର୍ଯ୍ୟକ୍ରମ ଥିଲା ଅପରାହ୍ଣ ୪.୩୦ରେ ସୂଚନା ଭବନରେ; ଏଇଥିପାଇଁ ସେ ବିବ୍ରତ ନଥିଲେ ଯେ ଯେଉଁ ସଫାରୀ ସୁଟ୍ ପିନ୍ଧି ନିଜ ବହି ଉନ୍ମୋଚନ ଉତ୍ସବକୁ ଯିବାର ଥିଲା, ସେ ସୁଟ୍ ଇସ୍ତ୍ରି କରି ଧୋବା ଆଣି ଘରେ ଦେଇଯିବାର ସମ୍ଭାବନା ଥିଲା ଅତ୍ୟନ୍ତ କ୍ଷୀଣ ।

ଏଇଥିପାଇଁ ଚିନ୍ତିତ ଥିଲେ ଯେ ତାଙ୍କ ସଫାରୀ ସୁଟ୍‌କୁ ଆଜି ଇସ୍ତ୍ରି କରିଦେବା ଲାଗି ପ୍ରତିଶ୍ରୁତି ଦେଇଥିବା ଧୋବାର ପୁଅ ଡାକ୍ତରଖାନାରେ ମୃତ୍ୟୁ ସହ ଲଢୁଥିଲା କର୍କଟ ରୋଗାକ୍ରାନ୍ତ ହେଇ । ସେ ହିଁ ଥିଲା ଉନ୍ମୋଚିତ ହେବାକୁ ଥିବା ବହିର ପ୍ରୋଟାଗୋନିଷ୍ଟ, ଯାହାକୁ ଆଜି ଅପରାହ୍ଣରେ ବିମୋଚନ କରିବେ ମୁଖ୍ୟମନ୍ତ୍ରୀ ସେ ପିଲାର ଅନୁପସ୍ଥିତିରେ ।



# ମୁଠେ ଚାଉଳ

ଆଦିବାସୀ ଗାଁରେ ଥିବା ସ୍କୁଲଟିରେ ଶିକ୍ଷକତା କରୁଥିବା ସମୟରେ ଜଣେ ଦିଶାରୀ ତାଙ୍କୁ ଏ ବିଦ୍ୟା ଶିଖେଇ ଥିଲା-ମଣିଷରୁ ବାଘ ଆଉ ବାଘରୁ ମଣିଷରେ ରୂପାନ୍ତରିତ ହୋଇଯିବା । ଦିଶାରୀ ଗୁପ୍ତରେ ଦେଇଥିବା ମନ୍ତ୍ରକୁ ପଢ଼ି ସେ ବାଘ ହୁଅନ୍ତି । ମାତ୍ର ବାଘରୁ ମଣିଷ ରୂପକୁ ଫେରିବା ଲାଗି ସ୍ତ୍ରୀଙ୍କୁ ଦେଇ ଯାଇଥାନ୍ତି ମୁଠାଏ ମନ୍ତୁରା ଚାଉଳ । ଯେବେ ବି କୌଣସି ସ୍କୁଲ୍ ଇନ୍‌ସପେକ୍ଟର, ଥାନାବାବୁ ଅଥବା ବି.ଡି.ଓ.ଙ୍କ ଆକ୍ରୋଶର ଶିକାର ହୁଅନ୍ତି ସେ, ସଂଧ୍ୟାରେ ବାଘ ପାଲଟି ସେଇମାନଙ୍କୁ ଆକ୍ରମଣ କରନ୍ତି, ବେଳେବେଳେ ତଣ୍ଟି କଣା ବି କରନ୍ତି । ପୁଣିଥରେ ମଣିଷ ରୂପ ନେଲା ପରେ ଖବର କାଗଜମାନଙ୍କ ପୃଷ୍ଠାରୁ 'ବାଘ ମାତିଛି' ଲେଖାମାନ ପଢ଼ି ଉଲ୍ଲସିତ ହୁଅନ୍ତି ।

ଦିନେ ସନ୍ଧ୍ୟାରେ ବାଘ ହେଇ ସେ ଘରୁ ବାହାରି ଯାଆନ୍ତି ସ୍ତ୍ରୀଙ୍କୁ ମନ୍ତୁରା ଚାଉଳ ଦେଇ । ସେଦିନ ରାତିରେ ତାଙ୍କର ଶିକାର ହୁଅନ୍ତି ଉକ୍ତ ପଲ୍ଲୀ ଗାଁର ସାହୁକାର । ପାହାନ୍ତିଆରେ ଆସି ନସର ପସର ହୁଅନ୍ତି ନିଜ ଘରେ ବାଡ଼ିପଟେ । ମାତ୍ର ସ୍ତ୍ରୀ ଆଗଭଳି ଆସନ୍ତି ନାହିଁ ମନ୍ତୁରା ଚାଉଳ ନେଇ । ସାହୁକାରଙ୍କ ଅକାଳ ମୃତ୍ୟୁରେ ମର୍ମାହତ ହୋଇ ସେ ଘର ଭିତରେ କାନ୍ଦୁଥାନ୍ତି ଉଚ୍ଚ ସ୍ୱରରେ ।

ଶୁଣାଯାଏ, ଏବେ ବି ତାଙ୍କ ଘର ବାଡ଼ିପଟେ ଅଧ ରାତିରେ ବାଘଟାଏ ନସର ପସର ହେଉଥାଏ ସବୁରି ଅଲକ୍ଷ୍ୟରେ ।



# ଜଣେ ଆତଙ୍କବାଦୀ ସହ ଗୋଟିଏ ସନ୍ଧ୍ୟା

ମୈହର ମନ୍ଦିରରେ ଶାରଦାଦେବୀଙ୍କ ଦର୍ଶନ ପରେ ପ୍ରେମୀ ଯୁଗଳ ସେଦିନ ବିଳମ୍ବିତ ସଂଧ୍ୟାରେ ରେବାଞ୍ଚଳ ଏକ୍ସପ୍ରେସ୍‌ରେ ନିର୍ଦ୍ଧାରିତ ସମୟର ଚାରିଘଣ୍ଟା ବିଳମ୍ବରେ ଆସି ପରଦିନ ସନ୍ଧ୍ୟାରେ ନୂଆଦିଲ୍ଲୀର ପାହାଡ଼ଗଂଜରେ ପହଂଚିଲେ । ଆତ୍ମହତ୍ୟା କରିବା ଥିଲା ମୁଖ୍ୟ ଉଦ୍ଦେଶ୍ୟ । କାରଣ ଦୁହିଁଙ୍କ ପରିବାର ସେମାନଙ୍କ ବିବାହ ପ୍ରସ୍ତାବକୁ କରୁଥିଲେ ପ୍ରବଳ ବିରୋଧ ।

ପାହାଡ଼ଗଂଜର ସେଇ ଗଳିରେ ପହଂଚିଲେ ଯେଉଁଠି ଛୋଟ ଛୋଟ ହୋଟେଲ ଥିଲା । ପ୍ରେମିକାର ମଥାନରେ ଥିବା ସିନ୍ଦୂର ଟିପା ହିଁ ଦୁହେଁ ସ୍ୱାମୀ-ସ୍ତ୍ରୀ ବୋଲି ପ୍ରମାଣ ଦେବାରେ ଯଥେଷ୍ଟ ସହାୟକ ଥିଲା । ମାତ୍ର ହୋଟେଲ ଫ୍ରଣ୍ଟ୍ ଅଫିସ୍‌ରେ ବସିଥିବା ତରୁଣୀଟି ସେମାନଙ୍କଠାରୁ ମିଛନାମ, ଠିକଣା, ଆସିବାର ଉଦ୍ଦେଶ୍ୟ ଆଦି ଦର୍ଜ କରିବାପରେ ସେମାନଙ୍କ ପରିଚୟପତ୍ର ମାଗିଲା । ପ୍ରେମିକଟି ଏଥର ହତାଶ ଆକ୍ଷିରେ ତାକୁ ପ୍ରଶ୍ନ କଲା: କେଉଁଠୁ ଆଣିବି ପରିଚୟ ପତ୍ର ଏବେ ? ଆମେ ଦୁହେଁ ଆମର ପରିଚୟ କେବଳ ।

ମାତ୍ର ଫ୍ରଣ୍ଟ ଅଫିସ୍‌ର ତରୁଣୀଟି ରୁକ୍ଷଭାବ ଦେଖାଇ କହିଲା: ବିନା ପରିଚୟ ପତ୍ରରେ ହୋଟେଲ୍‌ରେ ପ୍ରବେଶ କରାଇବା ସଂଭବ ନୁହେଁ । ଦିଲ୍ଲୀରେ କୋଉଠି ବି ମୁଣ୍ଡ ଗୁଞ୍ଜିବାକୁ ମିଳିବନି ଜାଗାଟେ ।'

ନବ ବିବାହିତାର ନିପୁଣ ଅଭିନୟ କରୁଥିବା ପ୍ରେମିକା ଉଦ୍ଦେଶ୍ୟରେ ସେ ତାଚ୍ଛଲ୍ୟ କରି କହିଲା, 'ପରିଚୟ ଦେଇପାରୁ ନଥିବା ଲୋକଟି ଦିଲ୍ଲୀରେ ଗୋଟେ ଆତଙ୍କବାଦୀ ।'

ହୋଟେଲ ବାହାରକୁ ନବଦମ୍ପତ୍ତି ବାହାରି ଆସୁଥିବାବେଳେ ପ୍ରେମିକାଟି ପ୍ରେମିକ ଆଡ଼େ ଏମିତି ଚାହୁଁଥିଲେ ଯେମିତି ସେ ତା' ମନର ମଣିଷ ନୁହେଁ, ବରଂ ଜଣେ ଆତଙ୍କବାଦୀକୁ ହିଁ ପ୍ରଥମ ଥର ପାଇଁ ଭେଟୁଛି ।



# ହାଡ଼ ଉପରେ ଗବେଷଣା

ମାନସିକ ସ୍ତରରେ ଦୁହିଁଙ୍କର ମେଳ ଥିବାରୁ ସେମାନଙ୍କ ଭିତରେ ବନ୍ଧୁତା ଥିଲା ନିବିଡ଼ ।

ଜଣେ ଥିଲା କର୍ମଠ ।

ଆର ଜଣକ ଅଳସୁଆ ।

କର୍ମଠ ଓ ପ୍ରାତଃଭ୍ରମଣ ସହିତ ନାନାଦି ବ୍ୟାୟାମ କରେ ନିତିଦିନ ଜଣେ। ଯୁକ୍ତି କରେ: ଶରୀରଚର୍ଯ୍ୟା ଯୋଗୁଁ ମନ ପ୍ରଫୁଲ୍ଲ ରହେ ଓ ହାଡ ଟାଣ ହୁଏ ।

ଅଳସୁଆ-ଆର ଜଣକ-ତା ଯୁକ୍ତିରେ ହସେ, କହେ-ସୁସ୍ଥ ହେଲେ ଯଦି ମନ ପ୍ରଫୁଲ୍ଲ ରହେ, ତେବେ ମୁଁ ବେଶି ଲାଭବାନ୍ । ବିନା ଧାଁଦଉଡ ଆଉ ଝାଳନାଳରେ ବେଶ୍ ଆନନ୍ଦରେ ଅଛି ।

ଏକା ତିଥିରେ ଦୁହେଁ ମରନ୍ତି । ବ୍ୟାୟାମ କରୁ କରୁ ଜଣକର ମେରୁହାଡ଼ ଭାଙ୍ଗେ । ଆର ଜଣକର ହାଡ ପୋପରା ହୋଇ ନାଡି ଛିଣ୍ଡିଯାଏ ।

ଏବେ ଦୁହେଁ ହାଡ ଉପରେ ଗବେଷଣାରତ, ସ୍ୱର୍ଗରେ ।



# କଳାଧନ

ଏ କଥା ଅଫିସ୍‌ରେ ପ୍ରାୟ ସମସ୍ତଙ୍କୁ ଜଣାଥିଲା ଯେ ଅଫିସ୍‌ରେ ନୂଆ ଜଏନ୍ କରିଥିବା ସୁନ୍ଦରୀ, ତନୁପାତଳୀ ତଥା ହସମୁଖି ସେକ୍ରେଟାରୀଙ୍କ ପ୍ରେମରେ ସେ ପଡି ଯାଇଛି । ଧୀରେ ଧୀରେ ସେ ପ୍ରେମ ଏତେ ଗଭୀର ହେଲା ଯେ 'ତନିସ୍କ'ରୁ ସେ ନେଇ ଆସିଥିଲା ହଳେ କାନଦୁଲ୍ । କାରଣ ଦୁଲ୍ ତରୁଣୀଟିର ଏକ ଦୁର୍ବଳତା ବୋଲି ସେ ଜାଣି ପାରିଥିଲା ।

ସେଦିନ ସଂଧ୍ୟାରେ ବସ୍ ଅଫିସ୍‌ରେ ନଥିବା ବେଳେ ଅନ୍ୟମାନଙ୍କ ଅଗୋଚରରେ ସେ ତରୁଣୀଟିର ଭଡ଼ାଘରକୁ ଯାଇଥିଲା ସଦ୍ୟ କିଣିଥିବା କାନର ଦୁଲ୍‌କୁ ପକେଟରେ ଭର୍ତ୍ତି କରି । ମାତ୍ର ବାହାରୁ ବସ୍‌ଙ୍କ ଗାଡ଼ି ଘର ସାମ୍ନାରେ ଦେଖି ଫେରି ଆସୁଥିବା ବେଳେ ଘର ଭିତରୁ ବାହାରି ଆସୁଥିବା ଖିଲି ଖିଲି ହସର ଛୁରୀ, ଯାହା ତା' କୋମଳ ହୃଦୟକୁ ଖିନ୍‌ଭିନ୍ କରି ପକାଉ ଥିଲା ।

ଘରକୁ ଫେରି ସେ ତା' ସ୍ତ୍ରୀକୁ ଉପହାର ଦେଇଥିଲା ଡାଏମଣ୍ଡ ଖଚିତ କାନର ଦୁଲ୍ । ସେଦିନ ଥିଲା ଭାଲେଣ୍ଟାଇନ୍ ଡ଼େ । ସ୍ତ୍ରୀ ଖୁସୀ ହେଲା, ଆଶ୍ଚର୍ଯ୍ୟ ବି ହେଲା । ମାତ୍ର କାନଫୁଲ ପିନ୍ଧି ସ୍ତ୍ରୀ ଯେବେ ତା' ସାମ୍ନାରେ ଚାଲିଯାଉଥିଲା, ତାକୁ ଲାଗୁଥିଲା ଯେ ସେଇଟା ତା' ପାଇଁ ଉଦ୍ଦିଷ୍ଟ ନଥିଲା। ଲାଗୁଥିଲା ଯେମିତି ଗୋଟେ କଳାଧନ, ଯାହାକୁ ନା ପାଖରେ ଶାନ୍ତିରେ ରଖିହୁଏ ନା କହି ହୁଏ ।



# ହିଟ୍‌ଲର

ପ୍ରତି ଶନିବାର ସଂଧ୍ୟାରେ ସେ ମଦ ପିଏ କିଛି ଦୋସ୍ତଙ୍କ ସହିତ । ଅନ୍ୟଦିନମାନଙ୍କରେ ପିଏନା, ଗ୍ରାହକଙ୍କୁ ପିଆଏ । ଏଇ ନିର୍ଜନ ଇଲାକାରେ ସେ ଏକମାତ୍ର ଢାବାଟିର ମାଲିକ । ଶନିବାର ସନ୍ଧ୍ୟାରେ ମଦ ପିଇ ଚୁର୍ ହେଇଯିବା ପରେ ଦୋସ୍ତମାନଙ୍କ ସାମ୍ନାରେ ନିଜ ଢ଼ାବାରେ କାମ କରୁଥିବା ବୟମାନଙ୍କୁ ସେ ପଛପଟୁ ଲାତମାରେ । ଯେଉଁ ପିଲା ମୁହଁ ମାଡ଼ି ତଳେ ପଡ଼ିଯାଏ ସେ ପାଏ ଶହେ ଟଙ୍କା ଆଉ ଯାହାର ଓଠ ଫାଟି ରକ୍ତ ଝରେ ସେ ପାଏ ଦେଢ଼ଶ' । ବର୍ଷସାରା ସବୁ ଶନିବାର ରାତିରେ ଏଇ ଖେଳଟା ତା'କୁ ଆନନ୍ଦ ଦିଏ । ବୟ ଗୁଡ଼ାକ ମାଲିକର ଅଦଉତି ସହିଯାନ୍ତି ନୀରବରେ, ଟଙ୍କା ଲୋଭରେ । ନିଶା ଯେତେ ଜୋର୍, ମାଡ଼ ସେତେ ପ୍ରବଳ ଆଉ ଟଙ୍କା ବି ସେଇ ଅନୁପାତରେ ଅଧିକା ।

ଦିନେ ଶନିବାର ସଂଧ୍ୟାରେ ଢ଼ାବା ମାଲିକ ତାଙ୍କ ଦୋସ୍ତମାନଙ୍କ ସହ ବସିଥାନ୍ତି ଆସରରେ । ସାଥିରେ ଥାଆନ୍ତି ନିକଟସ୍ଥ ବେସରକାରୀ ମହିବିଦ୍ୟାଳୟର ମନୋବିଜ୍ଞାନ ଅଧ୍ୟାପକ । ମାଲିକଙ୍କ ଲାତ ଖାଇ ଯେତେବେଳେ ଚତୁର୍ଥ ବୟଟି ମାଟି କାମୁଡ଼ି ପଡ଼ିଗଲା, ଅଧ୍ୟାପକ କହିଲେ: ହିଟଲରଙ୍କ କଥା ଖୁବ୍ ମନେ ପଡୁଛି ଆଜି ।"

: କାହିଁକି ଭାଇ ଏ ଅବେଳରେ ?' ଜଣେ ତାଚ୍ଛଲ୍ୟ କଲା ।

ଆଉ ଜଣେ ମୁଚ୍‌କି ହସି ପଚାରିଲା,

: କ'ଣ ମନୋବିଜ୍ଞାନଟା ଭଲ ଲାଗୁନି, ହଠାତ୍ ଇତିହାସ ପ୍ରେମରେ ପଡ଼ିବାର ମନୋବୈଜ୍ଞାନିକ କାରଣ କ'ଣ ?"

ଅଧ୍ୟାପକ ଅଗତ୍ୟା ଅବତାରଣା କଲେ:

ଥରେ ହିଟ୍‌ଲର ପ୍ରବଳ ଶୀତ ଦାଉରୁ ବଞ୍ଚିବା ପାଇଁ ଜଣେ ଇହୁଦୀ ମହିଳାଙ୍କୁ ଅନୁରୋଧ କଲେ ଅନ୍ତତଃ ଛିଣ୍ଡି ଯାଇଥିବା କମ୍ବଳଟିଏ ତାଙ୍କୁ ଦେବାଲାଗି । ସେତେବେଳେ ମହିଳା ଜଣକ ତାଙ୍କ ପୋଷା କୁକୁରଟି ଉପରେ ଦୁଇଟି ମୋଟା କମ୍ବଳ ଘୋଡାଉଥିଲା ତାକୁ ଶୀତରୁ ରକ୍ଷା କରିବା ଲାଗି । କିଶୋର ହିଟଲରଙ୍କ ଉପରେ ସେ ଚିଡ଼ି ଯାଇ କହିଲେ, : ତୁ କ'ଣ ମୋ କୁକୁରଠୁଁ ବେଶୀ ଦାମୀ ?"

ହିଟଲର୍ ସେଇଦିନ ମନେ ମନେ ପ୍ରତିଜ୍ଞା କଲେ ଯେ ଯଦି କେବେ ସେ କ୍ଷମତାପନ୍ନ ହୁଅନ୍ତି ତେବେ ସେ ଏ ଧରାପୃଷ୍ଠରୁ ଇହୁଦୀମାନଙ୍କୁ ନିପାତ କରିବେ ପ୍ରଥମେ ।

: ହେଲେ ଏ କଥା ଏଠି ଶୁଣାଇବାର ମାନେ କ'ଣ ଅଧ୍ୟାପକ ?

: ମୁଁ ଭାବୁଚି ଆମ ଢାବା ମାଲିକଙ୍କ ଜୀବନରେ ସେମିତି ବୋଧେ କିଛି ଘଟିଛି ! କେହି କିଛି କହିଲେନି, ସେ ପୁଣି ଗପିଲେ ।

: ହେଇପାରେ କିଶୋର ବୟସରେ ସେ ଅନେକ ଥର ତାଙ୍କ ମାଲିକଙ୍କ ଠାରୁ ଗୋଇଠା ମାଡ଼ ଖାଇଥିବେ, ଓଠ ଫଟାଇ ଥିବେ ।

ସମସ୍ତଙ୍କୁ ଅବାକ୍ କରି ଢ଼ାବା ମାଲିକଙ୍କ ଆଖିରୁ ଝରି ଚାଲିଥିଲା ଲୁହ ।

❑❑❑

# ଅଭିନୟ

ଉଚ୍ଚ ନ୍ୟାୟାଳୟ ପରିସର ବାହାରେ ପାର୍କିଂରେ ଥିବା ଗାଡ଼ି ପାଖକୁ ଆସିଲାବେଳେ ତାକୁ ଘେରି ଯାଇଥିଲେ ପ୍ରାୟ ଦୁଇ ଡର୍ଜନରୁ ଅଧିକ ଟି.ଭି. ଚାନେଲ୍‌ର ପତ୍ରକାର । ସବୁରି ହାତରେ ଥିଲା ନିଜ ନିଜ ସଂସ୍ଥାର ଭିଡ଼ିଓ ସୁଟିଂ ଯନ୍ତ୍ରପାତି । କାରଣ ଥିଲା ଅତ୍ୟନ୍ତ ସ୍ପଷ୍ଟ । ଦେଶର ସବୁଠୁ ଲୋକପ୍ରିୟ ତଥା ସମ୍ଭ୍ରାନ୍ତ ଅଭିନେତାଙ୍କ ମକଦ୍ଦମାର ସେ ଥିଲେ ବରିଷ୍ଠ ଓକିଲ ।

ସଂବାଦିକମାନେ ତାଙ୍କୁ ପଚାରିଥିଲେ ସ୍ୱାଭାବିକ୍ ପ୍ରଶ୍ନ–ସେ ଲଢୁଥିବା ମକଦ୍ଦମାର କୋର୍ଟରେ ଆଜିର ପ୍ରଗତି ।' ମାତ୍ର ସେ ଥିଲେ ମାତ୍ରାଧିକ ଭାବପ୍ରବଣ ଓ ସ୍ୱରରେ ତାଙ୍କର ଥିଲା ମୃଦୁ କମ୍ପନ ।

: ମୋର ମହକିଲ, ଦେଶର ଜଣେ କୁଶଳୀ ଅଭିନେତା, ଏ ଯାବତ୍ ଶତାଧିକ ଛବିରେ ସଫଳ ଅଭିନୟ କରିବା ସହ ପ୍ରାୟ କୋଡିଏରୁ ଅଧିକ ଛବି ବକ୍ସ ଅଫିସ୍ ହିଟ୍ କରିଛି । ନିକଟରେ ସେ ଅଭିନୟ କରୁଥିବା ଏକ ଛବିରେ ନିଖୁଣ ଅଭିନୟ ଆଣିବା ଲାଗି ସେ ଚେଷ୍ଟା କରିଥିଲେ । ତେଣୁ ନିଜ ଘରେ ଥିବା ଚାକରାଣୀ ସହ ସେ ଧର୍ଷଣ ଦୃଶ୍ୟର ଅଭ୍ୟାସ କରୁଥିଲେ ସୁଟିଂ ସେଟ୍‌କୁ ଯିବା ଆଗରୁ । ଯେଉଁ ଲୋକପ୍ରିୟ ଅଭିନେତାଙ୍କ ସାନ୍ନିଧ୍ୟ ପାଇବା ଲାଗି ଦେଶର ହଜାର ହଜାର ସୁନ୍ଦରୀ ଲଳନା ସ୍ୱପ୍ନ ଦେଖୁଛନ୍ତି, ସେ କାହିଁକି ନିଜ ଚାକରାଣୀ ସହ ଅଶ୍ଳୀଳ ବ୍ୟବହାର କରିବେ ? ଏହା କିଛି ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତିଙ୍କ ଗଭୀର ଷଡ଼ଯନ୍ତ୍ର । ଦେଶର ନ୍ୟାୟ ପ୍ରଣାଳୀରେ ମୋ ମହକିଲଙ୍କର ଗଭୀର ବିଶ୍ୱାସ ରହିଛି । ସେ ଜାମିନ୍ ପାଇବା ସହ ନିର୍ଦ୍ଦୋଷରେ ଖଲାସ ହେବେ, ମୁଁ ଗଭୀର ଆଶାବାଦୀ ।"

ଏକା ଲହସରେ କହୁକହୁ ଓକିଲ ମହାଶୟ କପାଳରୁ ଝାଳ ପୋଛିଲେ ରୁମାଲ୍‌ରେ । ଲାଗୁଥିଲା ସତେ ଯିମିତି ଓକିଲ ମହାଶୟ ନିଜେ କୌଣସି ଏକ ଛବିର ସୁଟିଂ ସେଟ୍‌ରେ ନିଜର ସଟ୍ ଦେଉଛନ୍ତି ।



# ଆୟୁଷ

ଆପଣ କେବେ ମରିବେ ?

ଗଲା କାଲି ନିଜ ଆୟୁଷ ସଂପର୍କରେ ଜାଣିବାକୁ ଆସିଥିବା ଯୁବକଟି ଆଜି ଜ୍ୟୋତିଷଙ୍କ ପାଖରେ ଶହେ ଟଙ୍କିଆ ନୋଟ୍‌ଟିଏ ରଖୁ ରଖୁ ପ୍ରଶ୍ନ କଲା ।

: ଦୁଇଶହ ଟଙ୍କା ପଡ଼ିବ ।' ଜ୍ୟୋତିଷ ନିର୍ବିକାର ହେଇ ଉତ୍ତର ଦେଲେ ।

: କିନ୍ତୁ ଆପଣ ତ ସମସ୍ତଙ୍କ ଠୁଁ ଶହେ ଟଙ୍କା ନେଉଛନ୍ତି ।"

: ଏ ଯାକେ କିନ୍ତୁ କେହି ପଚାରି ନଥିଲେ ମୋ ବିଷୟରେ । ନିଜକୁ ନେଇ ସମସ୍ତେ ପାଗଳ ।'

ଯୁବକଟି ପକେଟରୁ ଆଉ ଏକ ଶହେ ଟଙ୍କିଆ ନୋଟ୍ କାଢ଼ିଲା, ଜ୍ୟୋତିଷ ଏଥର ଉତ୍ତର ଦେଲେ,

: "ମରି ସାରିଥିବା ଲୋକର ଆୟୁଷ ପଚାରୁଛ କ'ଣ ପାଇଁ ?"

ଜ୍ୟୋତିଷଙ୍କ ଉତ୍ତରରେ ଯୁବକଟିଏ ଏତେ ପ୍ରଭାବିତ ହେଇ ଯାଇଥିଲା ଯେ ମନେ ମନେ ଭାବିବାକୁ ଲାଗିଲା–ନିଜର ଆୟୁଷ ଜାଣିବାକୁ ଚାହୁଁଥିବା ଲୋକଟି ମରି ସାରିଥାଏ ଏ ପ୍ରଶ୍ନ ପଚାରିବାର ଅନେକ ଆଗରୁ ।



# ଲଫାପା

ପ୍ରାୟ ତିରିଶି ବର୍ଷ ଧରି ଥିଲା ଦୁଇ ସମବୟସ୍କଙ୍କ ଭିତରେ ଅତୁଟ ବନ୍ଧୁତା। ଜଣେ ଲେଖକ ଓ ଆର ଜଣକ ସଂପାଦକ ଗୋଟିଏ ରଚିଶୀଳ ତଥା ସମ୍ଭ୍ରାନ୍ତ ସାହିତ୍ୟ ପ୍ରତିକାର । ଜଣେ ଲେଖେ, ଆର ଜଣକ ସେ ସବୁ ଲେଖାକୁ ଛାପେ । ଦୁହେଁ ନିଜ ନିଜ ଭୂମିକାରେ ଯଶସ୍ୱୀ ହୁଅନ୍ତି । ସଂପାଦକଙ୍କ ପତ୍ରିକାର କାଟ୍‌ତି ବଢ଼େ । ଲେଖକଙ୍କୁ ମିଳେ ଅଗଣିତ ଅନୁଷ୍ଠାନ ପକ୍ଷରୁ ପୁରସ୍କାର ଓ ସମ୍ମାନ ।

ସମୟ ଗଡ଼ି ଚାଲେ । ଦୁହେଁ ପଚାଶୋତ୍ତର ବୟସରେ ନିଜ ନିଜ ଖ୍ୟାତିକୁ ନେଇ ଜୀବନ ଜୀଇଁଥାନ୍ତି ।

ଦିନେ ଶୀତଋତୁର ଅଳସ ଅପରାହ୍ନରେ ଲେଖକ ପହଞ୍ଚିଲେ ସଂପାଦକଙ୍କ ଦପ୍ତରରେ ଚା' ପିଇବା ବାହାନାରେ ।

: ଆଜିକାଲି ଲେଖା ପଠଉନ ? କ'ଣ ଅସୁବିଧା ହେଇଛି ?' ସଂପାଦକ ପଚାରିଲେ କଥା ନହସରେ ଲେଖକଙ୍କୁ ।

: ସଂସାରର ମାୟାଜାଲରେ ଛନ୍ଦି ହୋଇ ଅଣ ନିଶ୍ୱାସୀ ଲାଗୁଛି ।' ସେ ଚା' ପିଇ ଉତ୍ତର ଦେଲେ ।

: ସେ ମାୟାରୁ କ'ଣ ମୁକ୍ତି ଅଛି ସହଜରେ ? ତା'ରି ଭିତରେ ତ ସୃଜନକୁ ସଂଖୋଳିବାକୁ ହେବ ?" ସଂପାଦକ କହିଲେ ।

: ଏତେ ବର୍ଷ ଧରି ତୁମ ପତ୍ରିକାରେ ଲେଖିଲି । କ'ଣ ପାଇଛି ପ୍ରତିଦାନରେ / ଗୋଟିଏ ଶାଲ୍ କି ଫଳକ ପାଇଁ ବି ଯୋଗ୍ୟ ହେଇନି ଏ ଯାବତ୍ ।" ଲେଖକଙ୍କ ସ୍ୱରରେ ଥିଲା ପରିହାସ । ତାଙ୍କ ଉତ୍ତରରେ ସଂପାଦକ ବିସ୍ମିତ ଓ ଆହତ ହେଲେ । ସଂପାଦକ କିଛି କହିବା ଆଗରୁ ସେ ପୁଣି ଆରମ୍ଭ କଲେ,

: ଗୋଟେ ସାମାଜିକ ସ୍ୱୀକୃତି ତ ଅଛି ଲେଖକ ପାଇଁ?

: ମାତ୍ର ତୁମେ ଜାଣିଛ, ଆମର ଆର୍ଥିକ ସ୍ୱଚ୍ଛଳତା ଏତେ ଭଲ ନୁହେଁ କୌଣସି ଲେଖକଙ୍କୁ ପୁରସ୍କାର ଦେବା ପାଇଁ । ଯଥା ସମ୍ଭବ ପାରିଶ୍ରମିକ ଦେଇ ପତ୍ରିକାଟିକୁ ବଂଚାଇ ରଖିଛି ବୋଲି ଜାଣ ।" ସଂପାଦକ ଦୀର୍ଘଶ୍ୱାସ ଛାଡ଼ିଲେ ।

: ସେ କଥା ତ ଜାଣିଛି ବୋଲି ଆସିଛି ଆଜି । ଏଇ ନିଅ ଲଫାପା । ଅନ୍ତତଃ ଏଇ ମାସରେ ଗୋଟେ ପୁରସ୍କାର ଘୋଷଣା କର, କାରଣ ଆର ମାସରେ ମୁଁ ସିକାଗୋ ଯିବି ଆଉ ଏକ ଆନ୍ତର୍ଜାତିକ ପୁରସ୍କାର ଆଣିବାକୁ ।"

କହୁ କହୁ ସେ ବିଦାୟ ନେଲେ ଅପ୍ରତ୍ୟାଶିତ ଭାବରେ । ସଂପାଦକ ଲଫାପା ଖୋଲି ଦେଖିଲେ ଭିତରେ ପଚାଶ ହଜାର ଟଙ୍କାର ଏକ ଡିମାଣ୍ଡ ଡ୍ରାଫ୍ଟ ଲେଖକଙ୍କନାଁରେ । କୌଣସି ଏକ ଉତ୍ସବରେ ଲେଖକଙ୍କୁ ପ୍ରଦାନ କରିବା ଲାଗି ସାଂକେତିକ ସୂଚନା ଦେଇ ସେ ଚାଲି ଯାଇଛନ୍ତି ।

ସଂପାଦକଙ୍କ ମନ ଭିତରେ ଗଢ଼ି ଉଠିଥିବା ଇଙ୍ଗିତର ଇମାରତ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡୁଥିଲା ଏକ ଅହେତୁକ ଭୂକମ୍ପନରେ ଯେମିତି ।



# ଦୁଃଖ

ଦୁଇ ଭଉଣୀ ଥିଲେ ଖୁବ୍ ତର୍କପ୍ରିୟ । ତର୍କ ନିପୁଣା ବଡ ଭଉଣୀର ସ୍ୱାମୀ ବିବାହର ଅଳ୍ପଦିନପରେ ଛାଡ଼ପତ୍ର ଦେଇଥିଲା ବେଳେ ସାନ ଭଉଣୀ ପାଇଁ ମନଲାଖି ବରଟିଏ ଖୋଜି ପାଇବା ଥିଲା ଦୁରୁହ ବ୍ୟାପାର । ମାତ୍ର ଏ ସବୁ ସତ୍ତ୍ୱେ ବି ଦୁଇ ଭଉଣୀ ସେମାନଙ୍କର ତର୍କ କରିବା ସ୍ୱଭାବକୁ ଅଲବିଦା କରି ପାରି ନଥିଲେ ।

ଦୁହେଁ ରହୁଥାନ୍ତି ସମ୍ଭ୍ରାନ୍ତ ସହରର ଏକ ଆକାଶଛୁଆଁ ଅଟ୍ଟାଳିକାର ୧୦୩ ନମ୍ବର ମହଲାରେ । ପ୍ରତିଦିନ ଦୁହେଁ ଗୋଟିଏ ଶବ୍ଦକୁ ନେଇ ତର୍କ କରନ୍ତି ନିଜ ନିଜ ଭିତରେ, ଯେମିତି 'ପ୍ରେମ' 'ଅହିଂସା', 'ବୁଦ୍ଧି', 'ବିଶ୍ୱାସ' ଇତ୍ୟାଦି । ସେଦିନ ଦୁହେଁ 'ଦୁଃଖ' ଉପରେ ତର୍କ କରିବା ଲାଗି ସମ୍ମତ ହୋଇ ଘରୁ ବାହାରିଲେ ସକାଳୁ ସକାଳୁ । ପ୍ରଥମ ପାଳି ପଡ଼ିଲା ବଡ଼ ଭଉଣୀର । ସେ ତା' ଜୀବନର ସମସ୍ତ ଦୁଃଖଦ ଘଟଣାକୁ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରିଦେଲା । ବିଦ୍ୟାଳୟ ଜୀବନରେ ଦୁଃଖଦ କାହାଣୀ ବର୍ଣ୍ଣନା କରୁ କରୁ ହୋଇ ଯାଇଥିଲା ମଧ୍ୟାହ୍ନ । ମଧ୍ୟାହ୍ନରୁ ଅପରାହ୍ନ ଯାଏ ସେ ତା' ପ୍ରେମର ବିଫଳତା ସଂପର୍କରେ କହି ଚାଲିଲା । ଘରକୁ ଫେରିବା ବାଟରେ ସେ ତା' ପିତାଙ୍କ ମୃତ୍ୟୁକଥା କହି ଦୁଃଖ ପ୍ରକଟ କଲାବେଳକୁ ସନ୍ଧ୍ୟା ହୋଇ ଯାଇଥାଏ । ସେମାନେ ନିଜ କୋଠରୀକୁ ଯିବା ଲାଗି ଏଲିଭେଟର୍ ପାଖେ ପହଂଚି ଜାଣିଲେ ଯେ ବିଦ୍ୟୁତ୍ ସରବରାହରେ କୌଣସି ତ୍ରୁଟି ଥିବାରୁ ସେମାନଙ୍କୁ ଷ୍ଟେଆର୍ କେସ୍ ଦେଇ ଯିବାକୁ ପଡ଼ିବ ଉପର ମହଲାକୁ ।

ବଡ ଭଉଣୀ ତଥାପି ବଖାଣି ଚାଲିଥାଏ ତା'ର ଦୁଃଖ କାହାଣୀ । ବଡ ଭଉଣୀ ସାନ ଭଉଣୀ ପାଖରେ ସବୁବେଳେ ଗୋଟିଏ କଥା ପ୍ରମାଣିତ କରିବାକୁ ଚାହୁଁଥାଏ ଯେ ଦୁଃଖ ଘଟଣା ସବୁବେଳେ ଲମ୍ବା । ସାରାଦିନ ଖୁବ୍ ଧୈର୍ଯ୍ୟର ସହ ସାନ ଭଉଣୀ ଶୁଣୁଥାଏ ତା'ର ବିଷାଦ ବର୍ଣ୍ଣନା । ବେଶ୍ କ୍ଲାନ୍ତ ହେଇ ଦୁହେଁ ପହଂଚି ସାରିଥାନ୍ତି ୧୦୩ ମହଲା ଦ୍ୱାର ସାମ୍ନାରେ । ଏଥର ବଡ ଭଉଣୀ କହିଲା, : ମୋ' ଦୁଃଖ କାହାଣୀ ସଇଲା । ଏବେ ତୁ କହ ।'

: 'ମୋ ଦୁଃଖ କଥା ମାତ୍ର କେତୋଟି ଶବ୍ଦର ସମାହାର ମାତ୍ର ।'

: 'ଅସମ୍ଭବ । ମୁଁ ବିଶ୍ୱାସ କରି ପାରୁନି ।'

: ମାତ୍ର ଏହା ଖୁବ୍ ଦାରୁଣ ଓ ଦୁଃଖ ଦାୟକ ।

: କହ ତେବେ ।

: ଆମ ବିଲଡିଙ୍ଗ୍ ବେସ୍ ମେଣ୍ଟରେ ମୁଁ ଘରର ସାମ୍ନା ଦରଜାର ଚାବି ଛାଡ଼ି ଦେଇ ଆସିଛି ।

ବଡ଼ ଭଉଣୀ ନିଶବ୍ଦରେ ଚିତ୍କାର କରୁଥିବାର ଏକ ମୁଦ୍ରାରେ ରହିଯାଇଥାଏ ଯାହାକୁ ଶବ୍ଦାନ୍ତରିତ କରାଯାଇପାରେ-

– 'ଓ, ନୋ...।'

❑❑❑

# ବରଫ ଓ ନିଆଁ

ଲୋକଟି ସକାଳୁ ସକାଳୁ ଘରୁ ବାହାରି ପଡ଼ିଲା । ହାତରେ ଆଟାଚି । ମୁହଁରେ ସିଗାରେଟ୍ । ଟାଉନ୍ ବସ୍‌ରେ ଚଢୁ ଚଢୁ ଗୋଟେ ଅଦ୍ଭୁତ ଖିଆଲ୍ ତାକୁ ଅକ୍ତିଆର୍ କଲା । ସବୁ ମଣିଷଙ୍କ ପରି ସେ ବି ଆଜିଯାଏ 'ଖାଲି ବଞ୍ଚିବା ଚିନ୍ତା କରି ଆସିଛି । ଯଦିଓ ମରିବା ବି ଏକ ଅନିବାର୍ଯ୍ୟ ସତ୍ୟ, ସେଇ ସତ୍ୟକୁ ସେ ସବୁରି ପରି ଦୂରେଇ ଆସୁଛି ।'

ନିଜକୁ ନିଆରା ଭାବି, ସେ ଦାର୍ଶନିକମନସ୍କ ହେଲା ଏବଂ ଭାବିବାକୁ ଲାଗିଲା- ସେ କିପରି ମରିବା ଉଚିତ୍ ? ନିଜକୁ ସେ ହିନ୍ଦୀ ଚଳଚ୍ଚିତ୍ରର ହୀରୋ ଭାବିବାକୁ ଲାଗିଲା, ଯେତେବେଳେ ସେ ନିଶ୍ଚୟ ହେଲା ଯେ ନିଜ ମରିବା ବି ସେ ନିଜ ଇଚ୍ଛା ମୁତାବକ ସ୍ଥିର କରିବ । ଭାବୁ ଭାବୁ ସେ ଅଧା ରାସ୍ତାରେ ବସ୍‌ରୁ ଓହ୍ଲାଇ ପଡ଼ିଲା । ସାମ୍ନାରେ ଦୁଇଟି ଘର ଥିଲା । ଗୋଟେ ଘରେ ଭର୍ତ୍ତି ହୋଇଥିଲା ବରଫ । ଆର ଘରେ ହୁତ୍ ହୁତ୍ ଜଳୁଥିଲା ନିଆଁ । ବରଫ ଘରେ ରଖା ଯାଇଥିଲା କୁଢ଼ କୁଢ଼ ମଣିଷଙ୍କ ଶବ । ଯେଉଁ ଘରେ ନିଆଁ ଜଳୁଥିଲା, ସେଇଟା ପ୍ରକୃତରେ ଥିଲା ଜୁଇ ।

ଲୋକଟି ସେଇ ଘର ଆଡ଼କୁ ନିର୍ନିମେଷ ଚାହିଁ ଥିଲାବେଳେ ଅଚାନକ ରାସ୍ତାରେ ଯାଉଥିବା ଦ୍ରୁତଗାମୀ ଟ୍ରକଟିଏ ତା ଉପରେ ମାଡ଼ିଗଲା । ଅଳ୍ପ ସମୟ ପରେ ଏକ ଆମ୍ବୁଲାନ୍‌ସ ଗାଡ଼ି ପହଂଚି ଯାଇଥିଲା ତା'ର ପୋଷ୍ଟମର୍ଟମ ପାଇଁ ।



# ଭାଇ ଭଉଣୀ

ସେମାନଙ୍କ ପାଇଁ ତାଙ୍କର ସାଇ ପଡ଼ିଶା ଗର୍ବ କରୁଥିଲା। ପିଲାଏ ପାଠ ନ ପଢ଼ି ଦୁଷ୍ଟାମୀ କଲାବେଳେ ବାପା। ମା' ସେଇ ଦୁଇ ଭାଇ ଭଉଣୀଙ୍କ ନଜିର୍ ଦେଉଥିଲେ । କାରଣ ଗତବର୍ଷ ସ୍ନାତୋକୋତ୍ତରର ପଦାର୍ଥ ବିଜ୍ଞାନରେ ଭାଇ ବିଶ୍ୱବିଦ୍ୟାଳୟରେ ଟପ୍ପର ହେଉଥିବା ବେଳେ ଏ ବର୍ଷ ସ୍ନାତକୋତ୍ତର ଇଁରାଜୀ ବିଭାଗରେ ଭଉଣୀ ସେଇ ବିଶ୍ୱବିଦ୍ୟାଳୟରୁ ଟପ୍ପର ହେଇଥିଲା। ସବୁ ଆଡ଼େ ଭାଇ ଭଉଣୀଙ୍କ ଚ଼ର୍ଚ୍ଚା ଟି.ଭି., ଖବରକାଗଜ ଆଉ କୋଚିଂ ସେଣ୍ଟରର୍‌ମାନଙ୍କରେ ଭୁରି ଭୁରି ଆଲୋଚନା ।

ଭଉଣୀର ସଫଳତା ସଂପର୍କରେ ଦିନେ ଏକାନ୍ତରେ ଭାଇ ପଚାରିଲା : ତୋ ସଫଳତାର ଚାବିକାଠି କ'ଣ ?

ଭଉଣୀ ସଂକ୍ଷିପ୍ତରେ ଉତ୍ତର ଦେଲା : ତୁ।

କାରଣ ଯେଉଁ କ୍ଲିନିକ୍‌ରେ ଗତବର୍ଷ ଭାଇ ନିଭୃତରେ ଇଁରାଜୀ ପ୍ରଫେସରଙ୍କ ଦ୍ୱିତୀୟା ପତ୍ନୀ ତଥା ପଦାର୍ଥ ବିଜ୍ଞାନର ପ୍ରଫେସରଙ୍କ ଗର୍ଭସ୍ଥ ଭ୍ରୁଣର ଲିଙ୍ଗ ନିରୂପଣ କରାଇଥିଲା, ସେଇ କ୍ଲିନିକ୍‌ରେ ଭଉଣୀ ଇଂରାଜୀ ପ୍ରଫେସରଙ୍କ ସହ ଯାଇ ଚୁପ୍‌ଚାପ୍ ଗର୍ଭପାତ କରାଇଥିଲା ଗତ ସପ୍ତାହରେ ।



# ଦୌଡ଼

ଦୌଡ଼ ପ୍ରତିଯୋଗିତାର ଶେଷଦିନରେ ଭାଗ ନେବାକୁ ଆଗେଇ ଆସିଥିଲେ ପ୍ରମୁଖ ଖେଳାଳିମାନେ । ସେମାନଙ୍କ ପରିଚୟ ଥିଲା, ହିଂସା, ଈର୍ଷା, କ୍ରୋଧ, କରୁଣା, ଦ୍ୱେଷ ଓ ସତ୍ୟ । ନିର୍ଦ୍ଧାରିତ ସମୟ ଆଗରୁ ଅଭ୍ୟାସ ପ୍ରତିଯୋଗିତା ଚାଲିଥିଲା ନିରନ୍ତର । ଶେଷ ଦିବସରେ ଖେଳ ସରିବା ପରେ ଫଳାଫଳ ଘୋଷଣା ହେଲାବେଳକୁ ପଡ଼ିଆ ଥିଲା ଜନଶୂନ୍ୟ । ପରଦିନ ଖବରକାଗଜମାନଙ୍କରେ 'ଦୁର୍ନୀତି'ର ଜୟଗାନ କରି ବାହାରିଥିଲା ଫଟୋ ସବୁ ।

ଦେଖଣାହାରୀଏ ଏଇଥିପାଇଁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଥିଲେ ଯେ କେବେ ବି ସେମାନେ ତାଙ୍କୁ ଖେଳରେ ଭାଗ ନେବାର ଦେଖି ପାରିନଥିଲେ । ଅବଶ୍ୟ ପରବର୍ତ୍ତି ସମୟରେ ଖବରଟିଏ ପ୍ରକାଶିତ ହୋଇଥିଲା ଯେ ସମସ୍ତ ଦେଖଣାହାରୀ ଥିଲେ ଜନ୍ମାନ୍ଧ ।



# ଗେଣ୍ଡୁଫୁଲର ବାସ୍ନା

ଗେଣ୍ଡୁଫୁଲର ବାସ୍ନା ପ୍ରତି ତାଙ୍କର ଥିଲା ଖୁବ୍ ଦୁର୍ବଳତା । ଅନେକ ବର୍ଷ ଧରି ସେ ଏକାପ୍ରକାରର ସ୍ୱପ୍ନଟିଏ ଦେଖୁଥିଲେ : ସହରରେ ଆୟୋଜିତ ଏକ ସମ୍ବର୍ଦ୍ଧନା ସଭାରେ ଗୁଣକୀର୍ତ୍ତନ ପରେ ଆୟୋଜକମାନେ ତାଙ୍କୁ ଗେଣ୍ଡୁଫୁଲର ହାରରେ ପୋତିପକାଉଛନ୍ତି ଓ ପରେ ପରେ ସେ ସଭାସ୍ଥଳରୁ ଫେରି ଆସୁଛନ୍ତି ନିଶ୍ଚୁପ ।

ଦିନେ, ସତକୁ ସତ ତାଙ୍କ ଘର ସାମ୍ନାରେ ଗେଣ୍ଡୁଫୁଲରେ ସଜ୍ଜିତ ଏକ କାର ପହଞ୍ଚିଲା ଓ କିଛି ଭଦ୍ରବ୍ୟକ୍ତି ତାଙ୍କୁ ଆୟୋଜିତ ସଭାସ୍ଥଳରେ ପହଞ୍ଚାଇ ଦେଲେ । ସମବେତ ଶ୍ରୋତାଙ୍କ ସାମ୍ନାରେ ଭୁରି ଭୁରି ପ୍ରଶଂସା ପରେ ଯେତେବେଳେ ଆୟୋଜକମାନେ ଗେଣ୍ଡୁଫୁଲର ହାରରେ ସମ୍ବର୍ଦ୍ଧିତ କଲେ, ଏହା ସେଇ ସ୍ୱପ୍ନର ଦୃଶ୍ୟ ବୋଲି ଭାବି ଚାଲିଥିଲେ ସେ ଏବଂ ପରେ ପରେ ସମସ୍ତଙ୍କୁ ସ୍ତବ୍ଧ କରି ମଞ୍ଚ ଉପରୁ ତଳକୁ ଓହ୍ଲାଇ ଧୀରେ ଧୀରେ ସେ ନିଜେ ବାସଭବନ ଆଡ଼କୁ ମୁହାଁଇଲେ । ସାଥୀରେ କେବଳ ରହିଥିଲା ଗେଣ୍ଡୁଫୁଲର ବାସ୍ନା ।



# ଶାଲ୍

ତାଙ୍କ ମରିବା ଦିନ ବଡ଼ପୁଅ ଥିଲା ଅଷ୍ଟ୍ରେଲିଆରେ, ସାନପୁଅ ନିଉଜର୍ସିରେ ଏବଂ ଝିଅ ଆସାମର ଦିବ୍ରୁଗଡ଼ରେ । ସ୍ତ୍ରୀ ଚାଲିଯାଇଥିଲେ ଅନେକ ଆଗରୁ । ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ଅର୍ଥର ଆବଶ୍ୟକତା ପଡ଼ିଲା । ବହୁଦିନରୁ ତାଙ୍କ ସେବା ଶୁଶୃଷା କରୁଥିବା ଚାକରପିଲାଟି ଗୋଟେ ଗଣ୍ଠିଲି ଆଣି ବାହାରେ ଥୋଇଦେଲା ଏବଂ କହିଲା: ବାବୁ କହିଥିଲେ, ଯାକୁ ବିକ୍ରି କରି କାଠ କିଣିଦେବ ମୋ ଜୁଇ ପାଇଁ ।

ପଡ଼ିଶା ଘରର ଭଦ୍ରବ୍ୟକ୍ତି ସେ ଗଣ୍ଠିଲି ଖୋଲିଲେ ଏବଂ ସେଥିରେ ଭିନ୍ନ ଭିନ୍ନ ରଙ୍ଗର ଅନେକଗୁଡାଏ ଶାଲ୍ ଥିବା ଦେଖିଲେ । ଅବଶ୍ୟ ବିଭିନ୍ନ ସାହିତ୍ୟ ସଙ୍ଗଠନ ଦ୍ୱାରା ତାଙ୍କୁ ଶାଲ୍ ଏବଂ ଶ୍ରୀଫଳ ଦେଇ ସମ୍ମାନିତ କରାଯାଇଥିଲା ତାଙ୍କ ଜୀବଦ୍ଦଶାରେ, ଯାହାର ଉପଯୋଗିତା ନେଇ ଅନେକ ସମୟରେ ସେ ପଡ଼ୋଶୀଙ୍କ ସହ ଚର୍ଚ୍ଚା କରୁଥିଲେ ।

ଗଣ୍ଠିଲିଟିକୁ ବଜାରକୁ ପଠାଇବା ପୂର୍ବରୁ ପଡ଼ୋଶୀ ଭାବୁଥିଲେ ଯେ ଦାରିଦ୍ର୍ୟ ନୁହେଁ; ବରଂ ଏକ ଅପମାନର ପ୍ରତିଶୋଧ ନେବାକୁ ସେ ସ୍ଥିର କରି ସାରିଥିଲେ ମରିବା ପୂର୍ବରୁ ।



# ଅପଯଶ

ଛୋଟ ଛୋଟ କଥାକୁ ନେଇ ସ୍ୱାମୀ-ସ୍ତ୍ରୀ ଭାବେ ସେମାନେ ଝଗଡ଼ା କରିବା ଘଟଣା ଥିଲା ସର୍ବଜନ ବିଦିତ । ସହରର ସେଇ ପ୍ରଖ୍ୟାତ୍ ଗଳିରେ ରହୁଥିବା ଲୋକେ ଭାବୁଥିଲେ-ଏଇଟା ସାମାଜିକ ଶ୍ରେଣୀରେ ରହିଥିବା ଆକାଶ ପାତାଳ ପ୍ରଭେଦର ଫଳ । କାରଣ ସ୍ୱାମୀଟି ଗୋଟିଏ ନିରୀହ ସରକାରୀ କିରାଣୀ ଥିବା ବେଳେ ସ୍ତ୍ରୀ ଥିଲେ ଭାରତ ପ୍ରଶାସନିକ ସେବାର ଜଣେ ଦୁର୍ଦ୍ଦାନ୍ତ ଅଧିକାରୀ। ସେମାନଙ୍କ କଳହକୁ ନେଇ ସେମାନଙ୍କ ନିକଟ ସଂପର୍କୀୟମାନେ ବି ଗୁଡ଼ାଏ ବେକାର ସମୟକୁ ଖର୍ଚ୍ଚ କରିବାର ସୁଯୋଗ ତିଆରି କରୁଥିଲେ । ପଡୋଶୀ ଏବଂ ସଂପର୍କୀୟମାନଙ୍କର ବଦ୍ଧମୂଳ ଧାରଣା ହୋଇଯାଇଥିଲା ଯେ ଦିନେ ନା ଦିନେ ନିଶ୍ଚୟ ଏଇ କଳହର ସମାଧାନ 'ଛାଡ଼ପତ୍ର'ରେ ହିଁ ସମ୍ଭବ ହେବ ।

ହଠାତ୍ ସ୍ୱାମୀ ଜଣକ ହାସ୍‌ପାତାଳରେ ଭର୍ତ୍ତି ହେଲେ । ନାନାବିଧ ପରୀକ୍ଷା ନିରୀକ୍ଷା ପରେ ଜଣା ପଡ଼ିଲା ଯେ ତାଙ୍କର ଦୁଇଟି ଯାକ ବୃକକ୍ ଅକାମୀ ହୋଇ ଯାଇଛି । ଡ଼ାଏଲେସିସ୍‌ରେ ଥିବା ସମୟରେ ପଡ଼ୋଶୀ ଓ ପ୍ରିୟଜନ ତାଙ୍କ ପାଖରେ ପହଞ୍ଚି ଆଶ୍ୱସନା ଦେବା ସହ ତାଙ୍କର ଆଶୁ ଅରୋଗ୍ୟ କାମନା କଲେ । କର୍ତ୍ତବ୍ୟରତ ଡ଼ାକ୍ତର 'କିଏ-କିଡ଼ନୀ ଦେବ ?' ବୋଲି ପଚାରିବାବେଳେ ସମସ୍ତେ ଚୁପ୍ ରହୁଥିଲେ, ମାତ୍ର ସମସ୍ତଙ୍କୁ ଚକିତ କରି ସ୍ତ୍ରୀଟି ତୁରନ୍ତ ଜବାବ୍ ଦେଲା : ମୁଁ ଦେବି ।

ସଫଳ ଅସ୍ତ୍ରୋପଚାର ପରେ ସ୍ୱାମୀ ଓ ସ୍ତ୍ରୀ ଫେରି ଆସିଲେ ନିଜ ଘରକୁ । ମାତ୍ର ଏବେ ବି ପଡ଼ୋଶୀ ଓ ପ୍ରିୟଜନମାନେ ନିଜ ନିଜ ଭିତରେ ପରିହାସ ଛଳରେ କଥାହେଉଥିଲେ: ଯେହେତୁ ଝଗଡ଼ା କରିବା ଲାଗି ସ୍ୱାମୀଟେ ବଂଚି ରହିବା ନିହାତି ଦରକାର, ତେଣୁ ସେ ତା କିଡ୍‌ନୀ ଦେଇ ସ୍ୱାମୀକୁ ବଂଚାଇ ରଖିଲା ।



# ଗୁରୁଦକ୍ଷିଣା

ଅନେକ ବର୍ଷ ଧରି ସେ ଆମମାନଙ୍କ ପାଇଁ ଏକ ଆଦର୍ଶ, ରୋଲ୍ ମଡ଼େଲ୍ ପାଲଟି ଯାଇଥିଲେ । ଯୌବନ ପହଂଚିବାର ଅନେକ ଆଗରୁ ତାଙ୍କ ପ୍ରତିଭା ସଂପର୍କରେ ଜାଣି ପାରିଥିଲେ ଆଖାପାଖ ଅଞ୍ଚଳର ଯୁବକମାନେ । କେହି କେହି ମନେ ମନେ ଇର୍ଷା କରୁଥିଲେ ତାଙ୍କୁ । ବେଳେବେଳେ ବନ୍ଧୁମହଲରେ ତାଙ୍କୁ କେନ୍ଦ୍ରକରି ଆଲୋଚନା ବି ବେଶ୍ ସରଗରମ ହେଇ ଉଠୁଥିଲା । ଚେ଼ହେରା ଅବା କୌଣସି ଅଦ୍ଭୁତ ଗୁଣର ଅଧିକାରୀ ନ ହେଇ ଥାଇ ବି ରୂପସୀ ଇଳନାମାନେ ତାଙ୍କ ପ୍ରତି ଆକର୍ଷିତ ହେଉଥିଲେ ବର୍ଷାଦିନେ ଇଲେକ୍ଟ୍ରିକ୍ ବଲ୍‌ବଆଡ଼େ ଝଡ଼ିପୋକମାନେ ଆସିବାପରି ? ଅନେକବର୍ଷ ଧରି ଏ ପ୍ରଶ୍ନର ସମାଧାନ ହେଇ ପାରି ନଥିଲା ।

ସମୟାନୁକ୍ରମେ ସେ ବାହା ହେଲେ, ବାପା ବି ହେଲେ । ତାଙ୍କୁ ଆଦର୍ଶ ଭାବୁଥିବା ଅନେକ ଯୁବକ ନିଜ ପେଟ ପାଟଣା ପାଇଁ ଚାକିରୀ ଓ ବ୍ୟବସାୟରେ ମାତିଗଲେ । ମାତ୍ର କେହି ତାଙ୍କର ଶିଷ୍ୟ ବା ଅନୁଗତ ହୋଇ ରହିପାରିଲେନି ।

ହଠାତ୍ ଦିନେ ଏକ ଅଭାବନୀୟ ଘଟଣାରେ ଚ଼ହଳ ପଡ଼ିଗଲା ସେଇ ଜନାକୀର୍ଣ୍ଣ ଅଂଚ଼ଳରେ । ଜଣେ ନୀଚ ଜାତିର ସୌନ୍ଦର୍ଯ୍ୟହୀନ ଯୁବକ ସହିତ ଅର୍ନ୍ତଦ୍ଧାନ ହୋଇଥାଏ ତାଙ୍କ ରୂପବତୀ କନ୍ୟା । କେହି କେହି ଏ ଘଟଣା ତାଙ୍କ ପ୍ରତି ଉପଯୁକ୍ତ ଗୁରୁଦକ୍ଷିଣା ବୋଲି ଉପହାସ ଛଳରେ ମନ୍ତବ୍ୟ ଦେଇ ଆଲୋଚନା ଆଗକୁ ବଢ଼ାଇ ନଥିଲେ ।



# ସୁଖଦୁଃଖ

ଅଫିସ୍‌ରୁ ଘରକୁ ଫେରିବାବେଳେ ସେ ବଜାରରୁ ମିଠାଇ ପ୍ୟାକେଟ୍ ନେଇ ଆସିଲେ ପିଲାଙ୍କ ପାଇଁ, କାରଣ ଆଜି ତାଙ୍କୁ ଆଶାତୀତ ଆନୁଆଲ୍ ଇନ୍‌କ୍ରିମେଣ୍ଟ୍ ମିଳିଥିବାରୁ ସେ ଉଲ୍ଲସିତ ଥିଲେ ।

ପରଦିନ ସଂଧ୍ୟାରେ ସେ ଅତିଦୁଃଖରେ ମ୍ରିୟମାଣ ହୋଇ ଘରରକୁ ଫେରିଲେ ଚୁପ୍‌ଚାପ୍, କାରଣ ତାଙ୍କଠୁଁ ତାଙ୍କ ସହକର୍ମୀଙ୍କୁ ସାମାନ୍ୟ ଅଧିକ ଆନୁଆଲ୍ ଇନ୍‌କ୍ରିମେଣ୍ଟ୍ ମିଳିଥିଲା । କେହି ଜଣେ କହିଥିବା ସେ ଜାଣିଥିଲେ : ଅନ୍ୟର ସଫଳତା ନିଜ ବିଫଳତାର ମାପକାଠି ।



# ଆର୍ଟିଷ୍ଟ

ପଢ଼ା ଆରମ୍ଭ କରିବା ଆଗରୁ ଛାତ୍ରମାନଙ୍କୁ ଲକ୍ଷ୍ୟକରି ସହରର ଜନାକୀର୍ଣ୍ଣ ଅଞ୍ଚଳରେ ଥିବା ପ୍ରାଚୀନ ହାଇସ୍କୁଲ୍‌ର ଅଭିଜ୍ଞ ତଥା କ୍ଷଣକୋପୀ ଗଣିତ ଶିକ୍ଷକ ପ୍ରଶ୍ନର ତୀରଟିଏ ଛାଡ଼ିଲେ : ବଡ଼ ହେଲେ ତୁମେ କ'ଣ କରିବ ?"

ଜଣ ଜଣ କରି ନିଜ ସିଟ୍‌ରୁ ଉଠି ଠିଆ ହେଲେ ଏବଂ ଉତ୍ତର ଦେଲେ,

: ଡାକ୍ତର

: ଇଂଜିନିୟର୍

: ବୈଜ୍ଞାନିକ

: ଆଇ.ଟି.ପ୍ରଫେସନାଲ୍

: ସାଂବାଦିକ

: ଫେସନ୍ ଡ଼ିଜାଇନ୍‌ର୍

: ଅଧ୍ୟାପକ

ଶେଷ ଧାଡ଼ିରେ ଚୁପ୍‌ଚାପ୍ ବସିଥିବା ଶାନ୍ତ ପିଲାଟି ଠିଆ ହେଲା ଓ ଗମ୍ଭୀର ସ୍ୱରରେ କହିଲା : ଆର୍ଟିଷ୍ଟ ।

: ଅର୍ଟିଷ୍ଟ !ମାନେ ? ନାସିକା କୁଞ୍ଚନ କରି ଶିକ୍ଷକ ତାଙ୍କୁ ତାଚ୍ଛଲ୍ୟ ସ୍ୱରରେ ପଚାରିଲେ; ପିକାଶୋ, ହୁସେନ୍ ନା ମନଜିତ୍ ବାଓ୍ୱା ?"

ପିଲାଟି ତାଙ୍କ ତାଚ୍ଛଲ୍ୟ ବୁଝି ପାରି ନଥିଲା, ହେଲେ ଉତ୍ତର ଦେଇଥିଲା ଖୁବ୍ ଗମ୍ଭୀର ହେଇ:

: ଆଗାମୀ ଦିନରେ ଡାକ୍ତର, ଇଂଜିନିୟର୍ ଆଉ ବୈଜ୍ଞାନିକଙ୍କର ତ ଦରକାର ହେଲେ ଦେଶ ପାଇଁ 'ଆର୍ଟିଷ୍ଟ୍'ର ଆବଶ୍ୟକତା ବେଶ୍ ଜରୁରୀ ହବ । ଆତଙ୍କବାଦୀଙ୍କୁ ଚିହ୍ନଟ କରିବା ଲାଗି ସ୍କେଚ୍ ତିଆରି କରିବା ଖୁବ୍ ଜରୁରୀ ହେଇଯିବ, ତେଣୁ ମୁଁ ଆର୍ଟିଷ୍ଟ ହେବାକୁ ଚାହେଁ ।

ସାରା କ୍ଲାସ୍ ନୀରବତାରେ ବୁଡି ଯାଇଥିଲା ଏଇଥିପାଇଁ ଯେ ଗତବର୍ଷ ସେଇ ପିଲାଟିର ବାପା ପ୍ରାଣ ହରାଇଥିଲେ ଆତଙ୍କବାଦୀଙ୍କ ବୋମା ବିସ୍ଫୋରଣର ଶିକାର ହେଇ ଏକ ଟ୍ରେନ୍ କମ୍ପାର୍ଟମେଣ୍ଟରେ । ଆଜି ଯାକେ ସେ ବ୍ୟକ୍ତିର ଚେହେରା ଆଙ୍କିବାରେ ପୁଲିସ୍ ସଫଳ ହେଇପାରିନି, ତାକୁ ଧରିବା ଦୂରର କଥା ।



# ଅନ୍ୱେଷଣ

: ନାଁ କ'ଣ ତମର ?

ଲୋକଟି ସେମିତି କାଠ ଭଳି ଠିଆ ହେଇଥାଏ । କିଛି ବି ଉତ୍ତର ବାହାରୁ ନ ଥାଏ ତା' ମୁହଁରୁ ।

କିରାଣୀଟି ଏଥର ଫାଇଲ୍ ଉପରୁ ମୁଣ୍ଡ ଉଠାଇଲା ବିରକ୍ତିରେ ।

: ଖାଲି ଖୁଣ୍ଟ ଭଳି ଠିଆ ହେଲେ କ'ଣ କରିବି ? କିଛି ତ କହୁନ, ନାଁ, ଠିକଣା, କ'ଣ ହଜିଛି ନ ଜାଣିଲେ କରିବି କ'ଣ ?

ଏ କଥା କହୁ କହୁ ସେ ଲୋକଟିକୁ ପୁଣି ପଚାରିଲା,

: ଆମ ଅଫିସ୍‌ରୁ କିଛି କାଗଜ ପାଇଛ ?

ଲୋକଟି ଏଥର ମୁଣ୍ଡ ନାଡ଼ିଲା, ଯାହାର ଅର୍ଥ ହେଲା- ନାଁ ।

କିରାଣୀଟି ଏଥର ମାଷ୍ଟ୍ରଟିଏ ଛାତ୍ରକୁ ଗଣିତ ବୁଝାଇବା ପରି କହିବାକୁ ଆରମ୍ଭ କଲା ।

: ଦେଖ ଭାଇ, ଚଳନ୍ତା ଟ୍ରେନ୍‌ରେ ଯଦି ତୁମେ କେବେ କିଛି ଜିନିଷ ଛାଡ଼ିଦିଅ, ସେ ସବୁ ଏଇଠି ଜମା ହୁଏ । ଆମେ ସେ ଜିନିଷ ଖୋଲି, ଲୋକର ଠିକଣା ପାଇବାକୁ ଚେଷ୍ଟା କରୁ । ସେଇଥିରୁ ମିଳିଥିବା ଟେଲିଫୋନ୍ ନମ୍ବର କିମ୍ବା ଠିକଣାରେ ଯୋଗାଯୋଗ କରୁ । ଏଇ ଦେଖ ! ଏ ବହି ବଣ୍ଡଲ୍, ମଟର ସାଇକେଲ୍, ପିଲାଙ୍କ ଖେଳନା-ସବୁ ଠିକଣା ଅଭାବରୁ ଏ ଗୋଦାମରେ ସଢ଼ୁଛି । ତୁମର କ'ଣ ହଜିଛି କହିଲେ ସିନା ଖୋଜିବି ?"

ଭାରତୀୟ ରେଳବାଇର ଭୋପାଳ ଷ୍ଟେସନ୍‌ରେ ଥିବା 'ଲସ୍ ଅଫ୍ ପ୍ରପର୍ଟି' ଡ଼ିପାର୍ଟମେଣ୍ଟରେ ଅନେକ ବର୍ଷ ଧରି କାମ କରୁଥିବା କିରାଣୀଟି ପ୍ରବଳ ଗରମ ସହି ନ ପାରି ସାମ୍ନାରେ ଥିବା ବୋତଲ ଖୋଲି ଢ଼କ୍ ଢ଼କ୍ କରି ପାଣି ପିଇଗଲେ ।

ଲୋକଟିର ଓଠ ଥରିବା ଆରମ୍ଭ କଲା ଏଥର । ସେ କହିଲା-ବର୍ଷକ ତଳେ ଯିଏ ଟ୍ରେନ୍‌ରେ ନିଖୋଜ ହେଇଯାଇଛି ହବିବ୍‌ଗଞ୍ଜ ଷ୍ଟେସନ୍ ପାଖରୁ ହିନ୍ଦୁ ମୁସଲମାନ୍ ଦଙ୍ଗା ବେଳେ, ତାକୁ ଖୋଜିବାକୁ ଆସିଛି ମୁଁ"

ଲୋକଟିର କଥା ଶୁଣି ବକ୍ ବକ୍ କରୁଥିବା କିରାଣୀଟିର ମୁହଁରୁ ଶବ୍ଦ ସବୁ ଉଡ଼ିଗଲା ଶିମିଳି ତୂଳା ପବନରେ ଭାସି ଯିବା ପରି । କାରଣ କିରାଣୀଟି ବି ହଜେଇ ସାରିଥିଲା ତା'ସାନ ଭାଇକୁ ସେଇ ଦଙ୍ଗାରେ ।

ଜିନିଷ ପତ୍ର ନୁହେଁ, ବରଂ ସେ ଅନୁଭବ କରୁଥିଲା ଯେ ମଣିଷ ନୁହେଁ ମଣିଷ ପଣିଆ ହିଁ ଧୀରେ ଧୀରେ ହଜି ଯାଇଛି ଆମ ଭିତରୁ, ଯାହାର ରକ୍ଷକଟିଏ ମିଳିବା ଏବେ ଖୁବ୍ ଜରୁରୀ ।



## ୨୦୫୦ ମସିହାର ଅଳସ ଅପରାହ୍ନରେ କୌଣସି ଏକ ସାଇକେଲ୍ ଦୋକାନର ଦୃଶ୍ୟ

: ନମସ୍କାର ।

: ନମସ୍କାର, ନମସ୍କାର । ଆପଣଙ୍କ ଦୋକାନରେ ପିଲାଙ୍କ ସାଇକେଲ୍ ଅଛି କି ?

: ଏଠି ତ ସବୁ ସାଇକେଲ୍ ହିଁ ସାଇକେଲ୍ । କୋଉ ମଡ଼େଲ୍ ନେବେ ଚଏସ୍ କରନ୍ତୁ । ଏଇ, କ୍ୟାଟ୍‌ଲଗ ଦେଖନ୍ତୁ । କ'ଣ ଏଇ ବାବୁଙ୍କ ପାଇଁ ?

: ହଁ, ଯେ ମୋ ନାତି ।

: ଜେକେ, ଏ ବଟରଫ୍ଲାଏ ମଡ଼େଲ୍‌ଟା ଦରକାର ।

: ଠିକ୍ ଅଛି, ଦାମ୍ କେତେ ଅଛି ଆଜ୍ଞା ?

: ଆପଣ ପାସପୋର୍ଟ ଆଣିଛନ୍ତି କି ?

: ନା, କେବେଠୁ ସେଇଟା ଅକାମୀ ହେଇଗଲାଣି ।

: ଭୋଟର ଆଇ.ଡ଼ି କାର୍ଡ଼ ?

: ମୁଁ କେବେ ବି ଭୋଟ ଦିଏନି । ସମସ୍ତେ ତ ଚୋର, କାହାକୁ ଦେବି ?

: ଟେଲିଫୋନ୍ ବିଲ୍ ?

: ବହୁତ ଦିନ ହେଲା ଲ୍ୟାଣ୍ଡ ଲାଇନ୍ କାଟି ଦେଇଛି ମୋବାଇଲ୍ ବି ବ୍ୟବହାର କରିବାକୁ ଡାକ୍ତର ମନା କରିଛନ୍ତି । ହେଲେ, ଏତେ ସବୁ କଥା ପଚାରୁଛନ୍ତି କାହିଁକି ?

: ଏଇଥି ପାଇଁ ଯେ ସାଇକେଲ୍ କିଣିବାକୁ ଆବଶ୍ୟକ ହେଉଥିବା ନିମ୍ନତମ ଯୋଗ୍ୟତା ଆପଣଙ୍କର ଅଛି କି ନାହିଁ ।

: ଗୋଟେ ପିଲାଙ୍କ ସାଇକେଲ୍ ପାଇଁ ?

: ଦେଖନ୍ତୁ, ଆଜିକାଲି ସାଇକେଲ୍ ବମ୍ ଉତ୍ପାତ ଏତେ ସାଧାରଣ କଥା ହେଇ ଯାଇଛି ଯେ ଆତଙ୍କବାଦୀଙ୍କୁ ପୋଲିସ୍ ଧରି ପାରୁନି, ହେଲେ ବମ୍ ମିଳିଥିବା ସାଇକେଲ୍‌ର ପରିଚୟ ପାଇବା ପାଇଁ ପୋଲିସ୍ ଆମକୁ ନୟାନ୍ତ କଲେଣି। ସରି, ଆପଣଙ୍କୁ ଏବେ ସାଇକେଲ୍ ବିକିବା ସମ୍ଭବ ନୁହେଁ ।'



# କାଳିସୀ

ବେଳେ ବେଳେ ରାତି ପାହିଲା ବେଳକୁ ଦେଖାଯାଏ ତା'ଘର ସାମ୍ନାରେ ପୋଲିସ୍ ଭ୍ୟାନ୍ । ଗାଁ ଲୋକେ ନିଶ୍ଚିତ ହେଇଯା'ନ୍ତି ଯେ ଆଉ ଅଳ୍ପ ସମୟ ପରେ ସେମାନେ ତାକୁ ଧରି ନେଇଯିବେ ସେଇ ଗାଡ଼ିରେ। ବର୍ଷକ ବାରମାସ ଚୋରି କରିବା ତା'ର ପେଶା । ଅନେକ ସମୟରେ ଧରା ପଡ଼ି ବନ୍ଧା ହେଇଛି, ଗୋଇଠା ମାଡ଼ ଖାଇଛି, ଗାଳି ବି ଶୁଣିଛି ଲୋକଙ୍କଠୁ ସେମାନଙ୍କ ରାଗର ଶିକାର ହେଇ !

ମାତ୍ର ପ୍ରତିବର୍ଷ ଦେବୀ ପୂଜା ବେଳକୁ ଦେବୀ ପ୍ରସନ୍ନ ହୁଅନ୍ତି ତାକୁ । ନାଲିକନାରେ ଗୁଡ଼ା ହେଇଥିବା ବେତ ବାଡ଼ି ଧରି ନାଚେ ମନ୍ଦିର ସାମ୍ନାରେ! କାନ୍ଦୁଥାଏ ଅହରହ! ଲୋକେ ଅଧିଆ ପଡ଼ନ୍ତି। ତା' ବେତବାଡ଼ିର ସ୍ପର୍ଶରେ ଦୁରାରୋଗ୍ୟ ବେମାରୀ ଭଲ ହେଇଯାଏ, ପରୀକ୍ଷାରେ ବାରମ୍ବାର ଅସଫଳ ହେଉଥିବା ଛାତ୍ର ଅନାୟସ୍‌ରେ ପାଶ୍ କରିଯାଏ, ସ୍ୱାମୀ-ସ୍ତ୍ରୀଙ୍କ ମନୋମାଳିନ୍ୟ ଉଭେଇ ଯାଏ ଧୂଆଁ ପରି, ନିଶ୍ଚିତ ହାରିବାକୁ ଥିବା କେଶ୍‌ରେ ବି ଜିତାପଟ ହୁଏ-ଏଇ ବିଶ୍ୱାସକୁ ପୁଞ୍ଜି କରି ହଜାର ହଜାର ଲୋକ ରୁଣ୍ଡ ହୁଅନ୍ତି ଆର୍ଶିବାଦ ନେବା ଲାଗି ।

ପୁଣି କିଛି ଦିନ ପରେ ସେଇ ଦୃଶ୍ୟର ପୁନରାବୃତ୍ତି : ପୋଲିସ୍ ଭ୍ୟାନ୍, ଲୋକଙ୍କ ଆକ୍ରମଣ, ବିଧା ଗୋଇଠା ଖାଇବା ଦୃଶ୍ୟ ।

ଗତ ବର୍ଷ କିନ୍ତୁ ଘଟଣା ଅନ୍ୟ ପ୍ରକାର ଘଟିଲା। ଜେଲ୍ ମିଆଦି ପୁରି ନଥାଏ । ହଠାତ୍ ଜେଲ୍‌ଖାନାରେ ତାକୁ ପ୍ରସନ୍ନ ହେଲେ ଦେବୀ। ସେ ସେଇଠି ବାରମ୍ବାର ମୂର୍ଚ୍ଛା ହେଲା ଏବଂ ନିଶା ବଟିକା ଖାଇବା ପରି ନାଚିଲା ।

ସମସ୍ତେ ଅଧିଆ ପଡ଼ିଲେ। ସେମାନଙ୍କ ଭିତରେ ଥିଲେ ଜେଲ୍ ସୁପରିଟେଣ୍ଡେଣ୍ଟ ସପରିବାର, କଏଦୀ ଓ ଅନ୍ୟାନ୍ୟ କର୍ମଚାରୀ ଓ ଜଗୁଆଳୀ । ନାଚ ଥମି ଆସିଲା ବେଳକୁ ଜଣା ପଡ଼ିଲା ଯେ ତିନିଶହ - କଏଦୀ ଫେରାର ହେଇ ଯାଇଛନ୍ତ ନିକଟସ୍ଥ ଜଙ୍ଗଲକୁ ।

ଏବେ ବି ସରକାରଙ୍କ ତରଫରୁ ଅନୁସଂଧାନ ଜାରି ରହିଛି ଯେ ତାକୁ 'ଦେବୀ ପ୍ରସନ୍ନ' ହେଇଥିବା ଘଟଣା ସତ ନା' ନୁହଁ।



# କାଠ

ରବିବାର ସକାଳୁ ସକାଳୁ କେହି ଜଣେ କଲିଂ ବେଲ୍ ଟିପିବା ମାତ୍ରେ ସେ ବିରକ୍ତ ହେଇଗଲେ ମନେ ମନେ । ଏ ଶୀତ ଦିନରେ ପୁଣି ଏତେ ସକାଳୁ କିଏ ଆଉ ଆସିବ ତା' ପାଖକୁ କାଠ ନେବାବାଲାଙ୍କୁ ବାଦ୍ ଦେଲେ ? ଆଖପାଖ ଗାଁ ଗଣ୍ଡାରେ ମୃତଲୋକଙ୍କ ଦାହ ସଂସ୍କାର ପାଇଁ କାରଖାନା ତରଫରୁ ମାଗଣାରେ ଜାଳେଣି କାଠ ଯୋଗାଇ ଦିଆଯାଇଥାଏ, ଯାହାର ଦାୟୀତ୍ୱରେ ସେ ଥାଏ । କାରଖାନାରେ ତା'ର ପ୍ରଶାସନିକ କାମ ।

ଦୁଆର ଖୋଲୁ ଖୋଲୁ ଯୁବକଟି ନଇଁ ପଡ଼ି ତାକୁ ନମସ୍କାର କଲା । ଯୁବକଟିକୁ ସେ ଚିହ୍ନେ । ମୁହଁରେ ଗଭୀର ଦୁଃଖ ଓ ଅବସାଦ ଫୁଟି ଉଠୁଥିବା ଯୁବକଟି ତା ହାତକୁ ବଢ଼ାଇଦେଲା ଏକ ଦରଖାସ୍ତ । ସେ ଦରଖାସ୍ତଟି ପଢ଼ି ବୁଝିଗଲା କାଠ ନୁହେଁ, ଗାଡ଼ି ଦରକାର ତା'ର ।

: କ'ଣ ପାଇଁ ? କାଗଜରେ ଦସ୍ତଖତ କରୁ କରୁ ପଚାରିଲା ସେ ।

: ସ୍ତ୍ରୀ ବେମାର । ଖୁବ୍ ନିର୍ଲିପ୍ତ ଥିଲା ତା'ର ଉତ୍ତର ।

: ରକ୍ତ କର୍କଟ ।

ବାସ୍, ଏତିକି ଶବ୍ଦ ହିଁ ଯଥେଷ୍ଟ ଥିଲା ନିସ୍ତେଜ ଓ ସ୍ତବ୍ଧ କରିଦେବାରେ ।

ସେ ଦେଖୁଥିଲା ଯୁବକଟି ଦସ୍ତଖତ ହେଇଥିବା ଦରଖାସ୍ତଟିକୁ ଧରି କିପରି ବିକଳ ଅବସ୍ଥାରେ ଧାଇଁଥିଲା କାରଖାନ ଭିତରେ ଥିବା ଗ୍ୟାରେଜ୍‌ରୁ ଗାଡ଼ି ନେବା ଉଦ୍ଦେଶ୍ୟରେ । ସିମିତି ଠିଆ ହେଇଥିଲା ସେ ଗୋଟେ ଶୁଖିଲା କାଠ ପରି ।



# ବୟସ

ତାଙ୍କୁ ଯେତେବେଳେ ଅଠତିରିଶି ବର୍ଷ ସେଇ ସମୟରେ ତାଙ୍କ ପତ୍ନୀ ବିୟୋଗ ହେଲା। ନିସନ୍ତାନ ଥିଲେ ସେ, ବନ୍ଧୁ ଓ ପରିଜନମାନେ ପୁନଃ ବିବାହ ପାଇଁ ତାଙ୍କୁ ପ୍ରବର୍ତ୍ତାଇବାରେ ଲାଗିଥିଲେ । ଦିନେ ପୂର୍ବାହ୍ଣରେ ସେ ଆଗରୁ ପରିଚୟ ଥିବା ଜଣେ ଭଦ୍ର ମହିଳାଙ୍କ ଘରକୁ ଗଲେ ଏବଂ ତାଙ୍କୁ କଥା-ବାର୍ତ୍ତା ମଝିରେ ପ୍ରସ୍ତାବ ଦେଲେ: ତୁମେ ମତେ ବାହା ହେବ ? ତାଙ୍କ ଏଇ ପଦକ ଶୁଣିବା ମାତ୍ରେ ଭଦ୍ର ମହିଳା ଟି'କପ୍‌ରେ ଚିନି ପକାଉ ପକାଉ ଲାଜେଇ ଗଲେ । ସେଇ ପ୍ରଶ୍ନର ସମ୍ମତି ସୂଚକ ମୁଣ୍ଡ ଟୁଙ୍ଗାରିଲା ବେଳକୁ ତାଙ୍କ ଗୋରା ମୁହଁରୁ ଲାଲ୍ ତଥାପି ଲିଭି ନଥାଏ ।

ମାତ୍ର ବନ୍ଧୁ ଓ ପରିଜନ ତାଙ୍କ ବିବାହ ଉତ୍ସବରେ କେହି ଯୋଗ ଦେଲେ ନାହଁ । ଚୁପ୍ ଚାପ୍ ସେ ଉକ୍ତ ମହିଳାଙ୍କୁ ନିଜ ଗାଡ଼ିରେ ବସାଇ ନେଇ ଆସିଲେ ଘରକୁ, ମନ୍ଦିରରେ ଦୁହେଁ ମୁଣ୍ଡିଆ ମାରିବା ପରେ । ବନ୍ଧୁମାନଙ୍କର ରାଗ ଏଇଥି ପାଇଁ ହେଲା ଯେ ଭଦ୍ର ମହିଳାଙ୍କର ବୟସ ତାଙ୍କଠୁ ପନ୍ଦରବର୍ଷ ବଡ଼ ଥିଲା ।

ସଂଯୋଗବଶତଃ ଭଦ୍ର ମହିଳା ବି ନିସଂଗ ଜୀବନଯାପନ କରୁଥିଲେ ।

ବିବାହର ବାଇଶିବର୍ଷ ବିତି ଯାଇଥିଲେ ବି ସେମାନଙ୍କ ପ୍ରେମ ଥିଲା ଅତୁଟ । ପରସ୍ପର ପ୍ରତି ସେମାନଙ୍କର ଥିଲା ଗଭୀର ସମ୍ମାନ। ଦୂରେଇ ଯାଇଥିବା ବନ୍ଧୁମାନେ କିନ୍ତୁ ଗୋଟେ କଥାକୁ ଆଦୌ ପାଶୋରୀ ନାହାଁନ୍ତି-ପଚସ୍ତରୀ ବର୍ଷ ବୟସରେ ଭଦ୍ର ମହିଳା ପଚାଶ ବର୍ଷର ନାରୀଙ୍କ ଚେହେରା ପରି ଲାଗୁଥିଲାବେଳେ ଭଦ୍ରବ୍ୟକ୍ତି ଲାଗୁଥିଲେ ଅଶିବର୍ଷର ବୁଢ଼ା ।



# କଥୋପକଥନ

: ନମସ୍କାର ।

: ନମସ୍କାର । ଏତେ ସକାଳୁ ସକାଳୁ ?

: କାମ ପଡ଼ିଲା ।

: କି କାମ ?

: ଗପଟେ ଲୋଡ଼ା ।

: କେବେ ଦରକାର ?

: ଯେତେ ଜଲ୍‌ଦି ହେଲେ ଭଲ ।

: କେତେ ପୃଷ୍ଠାର ଗପ ?

: ସାଢ଼େ ସାତ ପୃଷ୍ଠା ।

: ସାଢ଼େ ସାତ ପୃଷ୍ଠା ?

: ହଁ, ଜଣେ ସେକ୍ରେଟାରୀ ତାଙ୍କ ସ୍ତ୍ରୀଙ୍କ କବିତା ସାଙ୍ଗକୁ ହାପ୍ ପେଜ୍‌ର ବିଜ୍ଞାପନ ଗୁନ୍ଥି ପଠେଇଛନ୍ତି ।

: ଠିକ୍ ଅଛି ।

: କେବେ ଦେବେ ?

: ଅପରିଦିନ ?

: ଠିକ୍ ଅଛି । ଧନ୍ୟବାଦ୍

: ଆପଣଙ୍କୁ ବି ।

❑❑❑

# ଭାଇରସ୍

ଜଣେ ଅଭିଜ୍ଞ ଅର୍ଥୋପେଡିକ୍ ଭାବେ ତାଙ୍କର ନାଁ ଅଛି । ସକାଳୁ ସକାଳୁ ଗୋଟେ କ୍ରିଟିକାଲ୍ ଅପରେଶନ୍ ସାରି ଡାକ୍ତରଖାନାରୁ ନିର୍ଦ୍ଧାରିତ ସମୟରେ ଘରକୁ ଫେରିଲେ ମଧ୍ୟାହ୍ନ ଭୋଜନ ପାଇଁ ।

ଉଷୁମ ପାଣି ଆଉ ସାବୁନ୍‌ରେ ନିଜ ହାତ ମୁହଁ ପରିଷ୍କାର ଧୋଇ ଡ୍ରାଇନିଂ ଟେବୁଲ୍ ସାମ୍ନାରେ ବସିଲେ।

ମଧ୍ୟାହ୍ନ ଭୋଜନ ବିରତି ପ୍ରାୟ ତିନି ଘଣ୍ଟା । ମାତ୍ର ସେ ଶୁଅନ୍ତିନି ଦିନବେଳା । ବସିଯା'ନ୍ତି କମ୍ପ୍ୟୁଟର ସାମ୍ନାରେ, ମେଲ୍ ଚେକ୍ କରନ୍ତି । ଅଭ୍ୟାସ ହେଇ ଗଲାଣି।

ମେଲ୍ ବକ୍‌ସ ଖୋଲି ସେ ଉତ୍ସୁକ ହେଇଗଲେ ପ୍ରଥମେ, ନିକଟରେ ସଂପର୍କ ଗଢ଼ି ଉଠିଥିବା ପ୍ରିୟ ବାନ୍ଧବୀଙ୍କ ପାଖରୁ ଆସିଥିଲା ମେଲ୍ । କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ପ୍ରାୟ ସପ୍ତାହେ ହେଲା ତାଙ୍କ ସହ ଯୋଗାଯୋଗ ହେଇ ନଥିଲା ତାଙ୍କର । ବାନ୍ଧବୀ ଲେଖିଥିଲେ, ଗୋଟେ ଜରୁରୀ କାମରେ ମୁଁ ତୁମକୁ ନ କହି ନାଇଜେରିଆ ଆସିଥିଲି । ଏୟାରପୋର୍ଟରୁ ହୋଟେଲକୁ ଯିବା ସମୟରେ ମୋର ସବୁ ଜିନିଷ ପତ୍ର ଚୋରୀ ହେଇଗଲା, ଦୟାକରି ତୁମେ ମୋ ହୋଟେଲ୍ ବିଲ୍ ଆଉ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ଏକ ହଜାର ଡଲାର ନିମ୍ନ ଲିଖିତ ବ୍ୟାଙ୍କ ଆକାଉଣ୍ଟକୁ ଟ୍ରାନ୍‌ସଫର କର । ମୁଁ ଘରେ ପହଁଚି ତୁମ ଟଙ୍କା ଫେରାଇଦେବି । ଅନ୍ତତଃ ମେଲ୍ ପାଇବାର ଏକ ଘଣ୍ଟା ଭିତରେ ଟଙ୍କା ପଠାଅ ।

ମେଲ୍ ପଢ଼ିବା ପରେ ତା କପାଳରେ ଉକୁଟି ସାରିଥାଏ କେଇବୁନ୍ଦା ଝାଳ ।

ତା'ର ହଠାତ୍ ମନେ ପଡ଼ିଲା ଯେ ତା'ସହ କାମ କରୁଥିଲେ ଜଣେ ମହିଳା ନର୍ସଙ୍କ ଭାଇ। କାମ କରନ୍ତି ନାଇଜେରିଆରେ ଗୋଟେ ବଡ଼ କମ୍ପାନୀରେ। ତୁରନ୍ତ ସେ ନର୍ସଙ୍କ ମୋବାଇଲ୍‌ରେ ଯୋଗାଯୋଗ କଲେ ତାଙ୍କ ବାନ୍ଧବୀଙ୍କୁ ସାହାଯ୍ୟ କରିବା ଲାଗି, ନର୍ସ ତାଙ୍କ ଭାଇଙ୍କୁ ଅନୁରୋଧ କରିବା ଲାଗି ମିନତି ମଧ୍ୟ କଲେ । ନର୍ସଟି ତାଙ୍କୁ ଅବଶ୍ୟ ସାହାଯ୍ୟ କରିବ ବୋଲି ପ୍ରତିଶ୍ରୁତି ଦେଲା ।

ସେ କିଛି କ୍ଷଣ ପାଇଁ ଆଖି ବନ୍ଦ କରି ଚୁପ୍‌ଚାପ ବସି ରହିଲେ କମ୍ପ୍ୟୁଟର ସାମ୍ନାରେ ତା'ପରେ ମୋବାଇଲ୍ ଉଠାଇ ବାନ୍ଧବୀଙ୍କ ନମ୍ବରକୁ ରିଂଗ କଲେ ।

: ହ୍ୟାଲୋ...... ।

ବାନ୍ଧବୀଙ୍କ ସ୍ୱର ଥିଲା ଆରପଟରୁ । ସେ କାଳବିଳମ୍ବ ନ କରି କହିଚାଲିଲେ,

: ବ୍ୟସ୍ତ ହୁଅନା । ମୁଁ ଟଙ୍କା ଟ୍ରାନ୍ସଫର କରୁଛି ଘଣ୍ଟାକ ଭିତରେ । ନାଇଜେରିଆରେ ଜଣେ ଚିହ୍ନାଲୋକ ଅଛନ୍ତି ଆମର । ସେ ତୁମକୁ ସାହାଯ୍ୟ କରିବେ ।

: କ'ଣ ସବୁ ବିଲ୍‌ବିଲଉଛ ? ତମ ଦେହ ଠିକ୍ ଅଛି ତ ? ମୁଁ ନାଇଜେରିଆ କାହିଁକି ଯିବି ? ଘରେ ଅଛି । ଟିକେ ଛାଇ ନିଦ ଲାଗି ଯାଇ ଥିଲା ତ ତୁମ ଫୋନ୍ ଆସିଲା ।

: ତା' ହେଲେ ଏ ମେଲ୍ କିଏ ପଠେଇଛି ତୁମ ନାଁରେ ? ସେ ମେଲ୍‌ଟି ଆମୂଳଚୂଳ ପଢ଼ି ଶୁଣାଇଲେ ।

ସଂକ୍ଷିପ୍ତ ହସି ବାନ୍ଧବୀ ତା'ର ଉତ୍ତର ଦେଲେ: ଭାଇରସ୍ ।

❑❑❑

# ମାଛି

ଆମେ ସବୁ ତାଙ୍କର ସ୍ତାବକ ଥିଲୁ । ତାଙ୍କ କବିତା ଆମକୁ ଏତେ ଦୂର ପ୍ରଭାବିତ କରିଥିଲା ଯେ ନିଜ ନିଜ ପ୍ରେମିକାମାନଙ୍କୁ ଗୋପନରେ ଚିଠି ଲେଖିଲା ବେଳେ ଆମେ ତାଙ୍କ କବିତାର ଉଦ୍ଧୃତିମାନ ଚିଠିରେ ଲେଖିବାକୁ ଆଦୌ ଭୁଲୁ ନଥିଲୁ । ଆମେ ଅର୍ଥାତ୍ ମୁଁ ଓ ମୋର ହାଇସ୍କୁଲରେ ପଢୁଥିବା ସହପାଠୀମାନେ ।

ପରେ ପରେ ଆମେ ତାଙ୍କ ବିଷୟରେ ଜାଣିବା ଲାଗି ତତ୍ପର ହେଇ ପଡିଲୁ । ତାଙ୍କ ପ୍ରେମ କବିତା ପଢ଼ି ଜଣେ ଯୁବତୀ ଏତେ ଦୂର ସମ୍ମୋହିତ ହେଇ ଯାଇ ଥିଲେ ଯେ ସେ ତାଙ୍କୁ ପ୍ରେମ ନିବେଦନ କଲେ ଏବଂ ବାହା ବି ହେଇଗଲେ । ପତ୍ର ପତ୍ରିକାରେ ଏ ଖବର ବି କାଁ ଭାଁ ବାହାରୁ ଥିଲା ।

ହାଇସ୍କୁଲ୍ ପାଠ ପଢ଼ା ପରେ ଆମେ ଯେ ଯୁଆଡ଼େ ନିଜ ନିଜ ଭାଗ୍ୟକୁ ଆଦରି ଚାଲିଗଲୁ । ଆମମାନଙ୍କ ପ୍ରେମରେ ବି ଯବନିକାପାତ ହେଲା। ମାତ୍ର ମୁଁ ସବୁଦିନ ପାଇଁ ତାଙ୍କ କବିତାର ସ୍ତାବକ ରହିଗଲି । କାଳକ୍ରମେ ମୁଁ ମୋର ଶିକ୍ଷା ସମାପ୍ତ ପରେ ବିଭିନ୍ନ କାରଖାନାରେ ଚାକିରୀ କରିବାକୁ ଲାଗିଲି । କାରଖାନାର ବାତାବରଣ କବିତା ଚର୍ଚ୍ଚା ପାଇଁ ଆଦୌ ଅନୁକୂଳ ନୁହେଁ । ଧୀରେ ଧୀରେ କବିତା ମୋ ନିକଟରୁ ଦୂରେଇ ଯାଉଥିଲା ମାତ୍ର ସମୟ ପାଇଲେ ବିଭିନ୍ନ ବହି ଦୋକାନରୁ ତାଙ୍କ ପ୍ରକାଶିତ କବିତା ବହି କିଣିବାକୁ ଚେଷ୍ଟା କରୁଥିଲି ।

ସମୟ ବଦଳି ଯାଇଥିଲା । ସେ ବି ବଦଳି ଯାଇଥିଲେ । ଏଣିକି ସେ ପ୍ରାୟ କବିତା ଲେଖୁ ନ ଥିଲେ ବରଂ ସାହିତ୍ୟ ତଥା ସାହିତ୍ୟିକମାନଙ୍କ ରଚନା ସଂପର୍କରେ ହିଁ ଲେଖୁଥିଲେ । ତାଙ୍କ ରଚନାରେ ଅନ୍ୟ ସାହିତ୍ୟିକମାନଙ୍କ ରଚନାର ସମାଲୋଚନା ଅପେକ୍ଷା ବ୍ୟକ୍ତିର ନିନ୍ଦା ବା କୁତ୍ସାରଟନା ହିଁ ବେଶୀ ପ୍ରକାଶ ପାଉଥିଲା ।

ଆଗ ଭଳି ତାଙ୍କର ଆଉ ସ୍ତାବକ ନଥିଲେ । ଫୁଲରେ ମହୁମାଛିଟି ବସିବା ଭୂମିକାକୁ ଛାଡ଼ି ଏବେ ସେ ଗୋଟେ ମାଛି ପରି ମଳ ଅଥବା ବାନ୍ତି ଉପରେ ବସିବା ଆରମ୍ଭ କରିଥିଲେ । ଏକଦା ତାଙ୍କ ପ୍ରିୟ ପାଠକେ, ତାଙ୍କୁ ହୁରୁଡାଇବାରେ ବ୍ୟସ୍ତ ଥିଲେ ।

ଶୁଣାଯାଏ, ବିବାହ ପୂର୍ବରୁ ତାଙ୍କ ପ୍ରେମିକାଟି ଅନ୍ତଃସତ୍ତ୍ୱା ହେଇ ଯାଇଥିଲା । ତେଣୁ ବିବାହ କରିବା ବ୍ୟତୀତ ଅନ୍ୟ ଗତ୍ୟନ୍ତର ନଥିଲା ତାଙ୍କର ।



# ଷଣ୍ଢ

ଦିଲ୍ଲୀରେ ପହଞ୍ଚିବାର ପ୍ରଥମ ଦିନ ବନ୍ଧୁ ପ୍ରଶ୍ନ କଲେ ଯେ ମୁଁ ତାଙ୍କ ଦ୍ୱାରା ପ୍ରଦର୍ଶିତ ଆର୍ଟ ଗ୍ୟାଲେରୀକୁ ଯାଇଛି କି ନାହିଁ । ବନ୍ଧୁ ଯଥା ଭିତରେ ଚିତ୍ର ଏବଂ ଭାସ୍କର୍ଯ୍ୟ ଶିଳ୍ପରେ ବେଶ୍ ନାଆଁ କରି ସାରିଲେଣି ଦେଶରେ । ମୁଁ ଉତ୍ତର ଦେଲି-ଆଜି ସଂଧ୍ୟାରେ ଯିବାର କାର୍ଯ୍ୟକ୍ରମ ଅଛି ।

ସଂଧ୍ୟାରେ ପହଞ୍ଚିଲି ଆର୍ଟ ଗ୍ୟାଲେରୀରେ । ସହରର ଏକ ସମ୍ଭ୍ରାନ୍ତ ଅଞ୍ଚଳରେ ଶୂନ୍‌ଶାନ ପରିବେଶରେ ରହିଚି ଏହି ଗ୍ୟାଲେରୀଟି । ଏକକ ଚିତ୍ରକଳା ଓ ଭାସ୍କର୍ଯ୍ୟ ଶିଳ୍ପ ପ୍ରଦର୍ଶନୀରେ ଏଥର ରହିଥାନ୍ତି ମୋର ବନ୍ଧୁ । ସେ ଜାଣନ୍ତି, ମୁଁ ଚିତ୍ର ଆଙ୍କେ ନାହିଁ ମାତ୍ର ଚିତ୍ର କଳାର ଆଦର କରେ ।

ଗ୍ୟାଲେରୀର ପ୍ରବେଶ ଦ୍ୱାରରୁ ହିଁ ଦେଖିହୁଏ ବନ୍ଧୁଙ୍କ ଅଙ୍କିତ ଚିତ୍ରମାନଙ୍କ କାନ୍‌ଭାସ୍ । ପ୍ରବେଶ ଦ୍ୱାର ଏବଂ ଘର ଦେଇ ଉପର ମହଲାକୁ ଯିବାକୁ ହୁଏ ସିଢ଼ି ଦେଇ । ଉପର ମହଲାର ଡାହାଣ କଡ଼ରେ ଦୁଇଟି ଅପେକ୍ଷାକୃତ ମୋଟି ସ୍ତ୍ରୀ ଲୋକ ବସିଥାନ୍ତି ଦୁଇଟି ଚେୟାର୍‌ରେ । ସାମ୍ନାରେ ଥାଏ ଛୋଟ ଟେବୁଲ । ଟେବୁଲ୍ ଉପରେ ଶିଳ୍ପୀ ବନ୍ଧୁଙ୍କ ପ୍ରୋଫାଇଲ୍ ଏବଂ ଚିତ୍ରକଳାରେ ତାଙ୍କ ବିଶେଷତ୍ୱ ସଂପର୍କରେ ସମ୍ୟକ୍ ଧାରଣା ଦିଆଯାଇଥିବା ବ୍ରୋଚର୍ ।

ସେଇ ରଙ୍ଗିନ୍ ବ୍ରୋଚରରୁ ଗୋଟିଏ ଉଠାଇ ଆଣୁ ଆଣୁ ଦୃଷ୍ଟିପଡ଼ିଲା ଶିଳ୍ପୀବନ୍ଧୁଙ୍କ ଦ୍ୱାରା ନିର୍ମିତ ଭାସ୍କର୍ଯ୍ୟ ଶିଳ୍ପର ଏକ ଦୁର୍ଦ୍ଦାନ୍ତ ନମୁନା : ଚୁପଚାପ୍ ବସିଥିବା ଲାଇଫ୍ ସାଇଜ୍‌ର ଷଣ୍ଢଟିଏ । ପ୍ରାୟ ସାତ ଫୁଟ ଲମ୍ବ, ଚାରିଫୁଟ ଓସାର ଏବଂ ଅଢ଼େଇ ଫୁଟ ଉଚ୍ଚତାର ଏଇ ଭାସ୍କର୍ଯ୍ୟଟି ତିଆରି କରିବାକୁ ତାଙ୍କୁ ପ୍ରାୟ ଛଅ ମାସରୁ ଅଧିକ ସମୟ ଲାଗିଛି ।

ଏପରି ଏକ ଦୁର୍ଲଭ ଦୃଶ୍ୟକୁ ମନେ ରଖିବା ଲାଗି ମୁଁ ଟେକି ଧରିଲି ମୋର କ୍ୟାମେରା । ମାତ୍ର ଦୁଇ ମୋଟି ମହିଳାଙ୍କ ମୃଦୁ୍ୟ ବାରଣ ଥିଲା ଚିତ୍ର ଉତ୍ତୋଳନ କରିବାକୁ ।

: ଆପଣ ୱେବ ସାଇଟ୍‌ରୁ ଡାଉନ୍‌ଲୋଡ଼ କରି ପାରିବେ, ଏଠୁ ଚିତ୍ର ନେବା ମନା ।

ଅବଶ୍ୟ ସେମାନଙ୍କ ଯୁକ୍ତି ବୁଝିବା ମୋ' ଦ୍ୱାରା ସମ୍ଭବ ନଥିଲା । ମାତ୍ର ସେମାନଙ୍କ ଆଖିର ଭାଷା କହୁଥିଲା, ସତେ ଯେମିତି କ୍ୟାମେରା ଭିତରେ ସେଇ ଭାସ୍କର୍ଯ୍ୟଟିର ପ୍ରାଣ ଅଟକି ଯିବ ଏବଂ ଏପରି ଏକ ଦୁର୍ଦ୍ଦାନ୍ତ ଜୀବ ବ୍ୟତିରେକ ସେମାନଙ୍କ ଜୀବନ ହୋଇଯିବ ତୁଚ୍ଛ, ଅସାର ତଥା ଐଶ୍ୱର୍ଯ୍ୟହୀନ ।

ମନେ ମନେ ହସି ହସି ମୁଁ ଗ୍ୟାଲେରୀର ବାହାରକୁ ଚାଲି ଆସିଲି । ସେତେବେଳେ ବାହାରେ ଆରମ୍ଭ ହେଇ ଯାଇଥିଲା ବର୍ଷାର ମୃଦୁ୍ୟ ସଂଗୀତ, ଅନେକ ଦିନ ପରେ ।



# ପାରିଧି

ସହରର ସବୁଠୁ କଦାକାର କନ୍ୟାଟି ପୂର୍ବାହ୍ନରେ ଏକ ଭରା ସାଂବାଦିକ ସମ୍ମିଳନୀରେ ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ସହାସ୍ୟ ପ୍ରକାଶ କଲା ଯେ ରାଜକୁମାରଙ୍କ ସହ ଗୋଟିଏ ରାତି ସହବାସ କରିବାକୁ ସେ ଆମନ୍ତ୍ରଣ ପାଇଛି। ସାରାଦିନ ଏଇ କଥାକୁ ନେଇ ଦେଶର ସମସ୍ତ ଇଲେକ୍ଟ୍ରୋନିକ୍ ଚ୍ୟାନେଲ୍ ଚର୍ଚ୍ଚାରେ ବ୍ୟସ୍ତ ରହିଲା । କୁତ୍ସିତ କନ୍ୟାର ଆତ୍ମ ବିଶ୍ୱାସ, ଦୂର ଦୃଷ୍ଟି ସାଙ୍ଗକୁ ରାଜକୁମାରଙ୍କ ମହାନତାକୁ ନେଇ ଆଲୋଚନା ତଥା ସମାଲୋଚନାରେ ବ୍ୟସ୍ତ ରହିଲା ମିଡ଼ିଆ ।

ମାତ୍ର ସଂଧ୍ୟା ପୂର୍ବରୁ ପୁନଃଶ୍ଚ କୁରୂପା କନ୍ୟାଟି ଆଉ ଏକ ସାଂବାଦିକ ସମ୍ମିଳନୀରେ ଯେତେବେଳେ ସଗର୍ବରେ ଘୋଷଣା କଲା ଯେ ସକାଳେ ସେ ଦେଇଥିବା ବିବୃତିଟି ସଂପୂର୍ଣ୍ଣ ଅସତ୍ୟ ତଥା ରାଜ୍ୟର ରାଜକୁମାରଙ୍କ ସହ ତାର ଆଦୌ ପରିଚୟ ବି ହୋଇନାହିଁ, ସେଇ ସମୟରୁ ମିଡ଼ିଆ ବ୍ୟସ୍ତ ରହିଲା, କନ୍ୟାଟିର ସାହାସ ତଥା ସତ କହିବାର ଦାମ୍ଭିକତା ସଂପର୍କରେ ବର୍ଣ୍ଣନା କରିବାରେ ।

ଅବଶ୍ୟ ରାଜକୁମାରଙ୍କ କାନରେ ଏ ସବୁ କଥା ପଡ଼ି ନଥିଲା, କାରଣ ରାଜକୁମାର ଯାଇଥିଲେ ପାରିଧିକୁ ସେଇ ସମୟରେ ।



# ମନୁ ଦାଶ ଓ ମୁଁ

ମୋର ପୃଥିବୀକୁ ଆସିବାର ଉଣେଇଶି ବର୍ଷ ପରେ ମନୁଦାଶଙ୍କର ଜନ୍ମ, ମାତ୍ର ଏ କଥା ଭାବିବା ଠିକ୍ ନୁହେଁ ଯେ ସେ ମୋ'ଠୁ ବୟସରେ ବଡ଼ ।

ପେଟ ଓ ପରିବାର ପୋଷିବା ପାଇଁ ମୁଁ ଛୋଟ ମୋଟ ଚାକିରୀଟିଏ କରୁଥାଏ । ଗୋଟିଏ କାରଖାନାରୁ ଆଉ ଗୋଟିଏ କାରଖାନାକୁ ଡ଼ିଆଁ ମାରୁଥାଏ । ଗୋଟିଏ ପ୍ରଦେଶରୁ ଆଉ ଏକ ପ୍ରଦେଶକୁ ଯାଉଥାଏ । ମନୁ ଦାଶ, ଏ ସବୁ ଦେଖୁଥାଏ ଚୁପ୍‌ଚାପ୍ ଏବଂ ହସୁଥାଏ ମନେ ମନେ କ'ଣ ଗୁଡ଼ାଏ ଏଣୁ ତେଣୁ ଭାବୁଥାଏ ।

ଆମେ ଦୁହେଁ ଘନିଷ୍ଠ । ନଖ ସହ ଚମର ସଂପର୍କ ପରି, ପାଣି ସହ ବରଫର ସଂପର୍କ ପରି, ଦେହ ସହ ନିଃଶ୍ୱାସର ସଂପର୍କ ପରି ।

ଆମେ ଦୁହେଁ ଦେଖିବାକୁ ଏକାପରି । ଏକା ପରି ହାତ, ଗୋଡ଼, ମୁଣ୍ଡ । ବେଳେ ବେଳେ କେହି ମନୁ ଦାଶକୁ ପଛରୁ ଡାକିଲେ ମୁଁ ଫେରି ଚାହେଁ, ଆଉ କେବେ କେବେ କେହି ମୋତେ ଡାକିଲେ ମନୁ ଦାଶ ଉତ୍ତର ଦିଏ । ମୁଁ ଯାହା ଖାଏ, ଯିମିତି ଶୁଏ, ଯୁଆଡ଼େ ଯାଏ ସେମିତି ଖାଏ ସେ, ସିମିତି ଶୁଏ ଆଉ ମୋ ସହ ସେଇପରି ଯାଉଥାଏ ମନୁ ଦାଶ, ବେଳେ ବେଳେ ତ ମନେ ହୁଏ, ସେ ମୁଁ ଅଥବା ମୁଁ ସେ । ମାତ୍ର ଆମର ଆଚରଣ ଭୂମି ଅଲଗା ଅଲଗା ।

ଅଫିସ୍‌ରେ ବସି ଉପରିସ୍ଥ ହାକିମଙ୍କ ଠାରୁ ମୁଁ ଉପଦେଶାମୃତ ପାନ କରୁଥିଲାବେଳେ ମନୁ ଦାଶ ଗାଏବ୍ ହେଇ ଯାଇଥାଏ । ଠିକ୍ ସେଇ ପରି କେଉଁ ଚିତ୍ରକଳା ପ୍ରଦର୍ଶନୀ, କବିତା ଆସର ଅଥବା ଭଲ ବହିଟିଏ ମନୁ ଦାଶ ପଢୁଥିବା ବେଳେ ତାର ଅଲକ୍ଷ୍ୟରେ ମୁଁ ଚୁପ୍‌ଚାପ୍ ଖସି ପଳାଇ ଯାଇଥାଏ ।

ମନୁ ଦାଶ ମୋ ପାଇଁ ଗାଳି ଖାଏ ଆଉ ମୁଁ ମନୁଦାଶ ଯୋଗୁଁ ନିନ୍ଦା ସହେ । ବେଳେବେଳେ ଲାଗେ ଆମେ ଦୁହେଁ ଅଲଗା, ପୁଣି ମଝିରେ ମଝିରେ ମନେ ହୁଏ ଆମେ ଦୁହେଁ ଅଭିନ୍ନ ।

ଏ ସବୁ କଥା କହିବାବେଳେ ବି ଜାଣିବା ମୁସ୍କିଲି ଯେ ଏ ସବୁ ମନୁ ଦାଶ କହୁଛି ନା ମୁଁ ?



# ଚମ୍ବଲ ଉପତ୍ୟକା କେଉଁଠି ?

ପ୍ରଥମ ଛାତ୍ରଟି ଜବାବ୍ ଦେଲା : ଭାରତରେ ।

ଦ୍ୱିତୀୟ ଜଣକ କହିଲା : ଦିଲ୍ଲୀରୁ ଉତ୍କଳ ଏକ୍‌ସପ୍ରେସ୍‌ରେ ବାହାରିବାର ପ୍ରାୟ ପାଞ୍ଚ ଘଣ୍ଟା ରାସ୍ତା ପାର ହେବା ପରେ ଚମ୍ବଲ ଆସେ ।

ତୃତୀୟ ଛାତ୍ରଟି ସବ୍‌ଜାନତା ଭଳି କହିବାକୁ ଆରମ୍ଭ କଲା : ମୋରେନା ଷ୍ଟେସନ୍ ପରେ ପରେ ଆସେ ଚମ୍ବଲ ଉପତ୍ୟକା, ଯେଉଁଠି ଡାକୁମାନେ ଅନାୟସରେ ପୁଲିସ୍ ଆଖିରେ ଧୂଳି ଦେଇ ଖସି ଯା'ନ୍ତି ମାଟିର ଖାଇ ଭିତର ଦେଇ ।

ଚୁପ୍‌ଚାପ୍ ବସି ଅନ୍ୟମନସ୍କ ଜଣାପଡୁଥିବା ଛାତ୍ରଟିକୁ ସେ ପଚାରିଲା, ଚମ୍ବଲ କେଉଁଠି ?

ପିଲାଟି ଚୁପ୍‌ଚାପ୍ ଠିଆ ହେଇ କିଛି ସମୟ ଭାବିଲା ଏବଂ କହି ଚାଲିଲା: ସବୁରି ମୁଣ୍ଡ ଭିତରେ ଚମ୍ବଲ୍‌ଟେ ଅଛି, ସାର୍ । ଅନେକ ଅନାବିଷ୍କୃତ ଖାଇରେ, କଳ୍ପନାର ଡକାୟତମାନେ ବେଶ୍ ଆରାମ୍‌ରେ ବୁଲୁଥାନ୍ତି ସେଠି, କେହି ତାର ଟେର୍ ପାଆନ୍ତି ନି ।

ସାରାଟା ସ୍କୁଲ ସ୍ତବ୍ଧ ।



# ଇନ୍‌କ୍ୟୁବେଟର୍

ଝରକା ଫାଙ୍କ ଦେଇ ପ୍ରାୟ ପ୍ରତି ଅପରାହ୍ନରେ ସେ ରାସ୍ତା ଆଡ଼କୁ ଅନେଇ ରହନ୍ତି । ଏ ଅଭ୍ୟାସ ରହିଥାଏ ବର୍ଷ ବର୍ଷ ଧରି ବଳବତ୍ତର ।

ବର୍ଷ ବର୍ଷ ଧରି ସେ ଅହରହ ଦେଖୁଥା'ନ୍ତି ମହିଳାଟିକୁ । ସାମ୍ନା ରାସ୍ତାର ଛକ ପାଖରେ କାହା ଅପେକ୍ଷାରେ ସେ ଥାଏ କେଜାଣି ? ପ୍ରାୟ ପ୍ରତିବର୍ଷ ଏଇ ବର୍ଷା ଦିନରେ ହିଁ ମହିଳାଟି ଗର୍ଭବତୀ ହୁଏ । ତା'ର ପେଟର ଆକୃତି ଏବଂ ଚାଲିବାର ଢ଼ଙ୍ଗରୁ ସେ ଠଉରାଇ ନିଅନ୍ତି ଏ କଥା । ପ୍ରତିବର୍ଷ ନୂଆ ନୂଆ ଚେହେରାର ଲୋକଙ୍କ ସହ ମିଶି ମହିଳାଟି ଅନ୍ତର୍ଦ୍ଧାନ ହେଇଯାଏ । କୁଆଡେ ଯାଏ ସେ ? କ'ଣ କରେ ? ଭାବନାର ଅଦୁଆ ସୂତାରେ ଗଣ୍ଠି ପଡିଯାଏ ବାରମ୍ବାର । ଦିନେ ଅପରାହ୍ନରେ ଗର୍ଭବତୀ ମହିଳାଟି ଜଣେ ମଧ୍ୟବୟସ୍କ ଲୋକ ସାଥିରେ ଚାଲି ଯିବାର ଦେଖି ତାଙ୍କ ମନ ଭିତରେ କୌତୂହଳ ଉଠେ । ସେ ଚାଲି ଚାଲି ଯା'ନ୍ତି ଛକ ପାଖକୁ । ପାଖ ପାନ ଦୋକାନୀଟି ସବୁ ଗୁମର ଖୋଲେ : ଏଇଟା ତା'ର ବୃତ୍ତି ।

ସବୁବେଳେ ସେ ତଲାସ୍‌ରେ ଥାଏ ନିଃସନ୍ତାନ ଦମ୍ପତ୍ତିଙ୍କର, ଯେଉଁମାନଙ୍କର କୁଳରକ୍ଷା ପାଇଁ ତା' ଗର୍ଭରେ ସଞ୍ଚାର କରନ୍ତି ଭ୍ରୂଣ । ଶିଶୁ ସନ୍ତାନର ଜନ୍ମ ପରେ ମାତ୍ର କେଇଦିନ ପରେ ମହିଳାଟି ଚୁକ୍ତିନାମାନୁଯାୟୀ ତା'ର ଆର୍ଥିକ ପ୍ରାପ୍ୟ ନେଇ ଫେରିଯାଏ ଆଉ ଏକ ଗ୍ରାହକ ତଲାସରେ ।

ଲାଗେ, ତା'ର ଜରାୟୁରୂପୀ ଇନ୍‌କ୍ୟୁବେଟରରେ ଆଶ୍ରୟ ନେବା ଲାଗି ଅପେକ୍ଷା କରିଥାନ୍ତି ଅନେକ ଆସନ୍ନ କୋମଳମତି ଶିଶୁ ।



# ସ୍ୱାଇନ୍-ଫ୍ଲୁ

: ସାର୍ ନମସ୍କାର !

: ନମସ୍କାର । କିଏ କହୁଛନ୍ତି ?

: ସାର୍, ଓଡ଼ିଆ ସାହିତ୍ୟ ପତ୍ରିକାର ମୁଁ ଜଣେ ସଂପାଦକ । ଆପଣଙ୍କ କବିତାର ଜଣେ ମୁଗ୍ଧ ପ୍ରଶଂସକ ।

: ବହୁତ ବହୁତ ଧନ୍ୟବାଦ, ଆପଣ ହିନ୍ଦୀ କବିତା ପଢୁଥିବା ଜାଣି ବେଶ୍ ଖୁସି ଲାଗୁଛି ।

: ଆପଣ ଆଜିଯାଏ ଲେଖିଥିବା ପ୍ରାୟ ଅଧିକାଂଶ କବିତାରେ ମୃତ୍ୟୁ ଚେତନାର ବଳିଷ୍ଠ ଚିତ୍ରଣ ମୋତେ ଅହରହ ଘାରେ । ସତ କହିବାକୁ ଗଲେ ସାର୍, ଆପଣଙ୍କ କବିତା ପଢ଼ିବା ପରେ ମୃତ୍ୟୁ ପ୍ରତିଥିବା ଅହେତୁକ ଭୟ ମନ ଭିତରୁ ଉଡ଼ି ଚାଲିଯାଏ ଅଦିନିଆ ଭସା ବାଦଲ ପରି ।

: କୁହନ୍ତୁ, ମୁଁ ଆପଣଙ୍କ ପାଇଁ କ'ଣ କରି ପାରିବି ?

: ପୂଜା ସଂଖ୍ୟା ପାଇଁ ଗୋଟେ ଇଣ୍ଟରଭ୍ୟୁ ଦରକାର ଆପଣଙ୍କର, ଆଶା ନିରାଶ କରିବେନି ପ୍ଲିଜ୍ ।

ଦୁହିଁଙ୍କ କଥୋପକଥନରେ କିଛି ସମୟର ନୀରବତା । ଟେଲିଫୋନ୍ ଲାଇନ୍‌ର ଦୁଇ ପାଖରେ ଦୁହେଁ ସକ୍ରିୟ । ସେ ପୁଣି କଥା ଆରମ୍ଭ କଲେ ।

: ଆଜି ଆପଣଙ୍କୁ ଭେଟିବାକୁ ଚାହୁଁଛି ।

: ମାତ୍ର ଟିକିଏ ଅସୁବିଧା ଅଛି।

: କ'ଣ ?

: ସପ୍ତାହେ ହବ କାଶ ହଉଚି, ମୁଣ୍ଡ ବିନ୍ଧୁଛି ଏବଂ ବାନ୍ତି ଲାଗୁଛି । ଦେହ ଆଦୌ ଭଲ ନାହିଁ । ମୁଁ କାହାକୁ ଦେଖା କରୁନି । ଡାକ୍ତର ସନ୍ଦେହ କରୁଛନ୍ତି-ସ୍ୱାଇନ୍ ଫ୍ଲୁ । ଭଲ ହୁଅନ୍ତା ଯଦି ଆପଣ ନ ଆସନ୍ତେ ।

: ନା, ନା, ସେମିତି କିଛି ଜରୁରୀ ନାହିଁ । ଇଣ୍ଟରଭ୍ୟୁ ତ ପରେ ନେଇ ହବ, ଆପଣ ପ୍ରଥମେ ସୁସ୍ଥ ହୁଅନ୍ତୁ । ଆପଣଙ୍କ ଆଶୁ ଆରୋଗ୍ୟ କାମନା କରୁଛି । ଧନ୍ୟବାଦ୍ ।

କେବଳ ଟେଲିଫୋନ୍ ରଖିବାର ଶବ୍ଦ ସଂଚରିଗଲା ଘରିଆଡେ ନୀରବତାର ପେଟ ଚିରି ।



# କାହାଣୀ

ଛୋଟ ସହରଟିରେ ତାଙ୍କ ବ୍ୟକ୍ତିତ୍ୱ ବେଶ୍ ଆଖିଦୃଶିଆ ଥିଲା । ତାଙ୍କୁ ନେଇ ଅନେକ କାହାଣୀ ।

ବୃତ୍ତିରେ ସେ ଥିଲେ ଜଣେ ଚାର୍ଟାର୍ଡ ଆକାଉଣ୍ଟାଣ୍ଟ୍ ଏବଂ ସମ୍ଭ୍ରାନ୍ତ ଶିକ୍ଷାନୁଷ୍ଠାନର ଅର୍ଥ ବିଭାଗୀୟ ମୁଖ୍ୟ । ବୃତ୍ତିକୁ ନେଇ ତାଙ୍କ ଆୟ ଓ ଜୀବନଯାପନ ପ୍ରଣାଳୀ ଥିଲା ନିଆରା । ସବୁଠୁ ଅଧିକା ବେତନ ତାଙ୍କର । ସବୁଠୁ ମହଙ୍ଗା ଜୀବନଚର୍ଯ୍ୟା ବି । ସନ୍ଧ୍ୟାରେ ବନ୍ଧୁ ଓ ସହକର୍ମୀଙ୍କ ସହ ସେ ପିଅନ୍ତି ଦାମୀ ବିଦେଶୀ ପାନୀୟ । ତାଙ୍କ ଘରେ ବିଦେଶୀ ସାମଗ୍ରୀର ଗୋଟେ ମିନି ବଜାର ଲାଗିଥିଲା ଯେମିତି । ପତ୍ନୀ ଆଧୁନିକା ଓ ସୁନ୍ଦରୀ । ମାଇଲ୍ ମାଇଲ୍ ଧରି ନିଜେ ଗାଡ଼ି ଚଳାନ୍ତି ସଡକରେ । ଡ୍ରାଇଭର ପଛସିଟ୍‌ରେ ବସେ ଚୁପ୍‌ଚାପ୍ । ସଂସାରର ସମସ୍ତ ବିଳାସରେ ସେ ବୁଡ଼ି ରହିଥାନ୍ତି ପ୍ରତି ନିୟତ ।

ହଠାତ୍ ସମସ୍ତଙ୍କୁ ସ୍ତବ୍ଧ କରି ସେ ନିଷ୍ପତ୍ତି ନିଅନ୍ତି ସନ୍ନ୍ୟାସୀ ହେବାକୁ । ବନ୍ଧୁଙ୍କ ଅନୁରୋଧ ଏବଂ ପରିବାରର ପ୍ରତିରୋଧକୁ ସେ ବିନମ୍ରତାର ସହ ପ୍ରତ୍ୟାଖ୍ୟାନ କରନ୍ତି ।

ସହକର୍ମୀମାନେ କାହାଣୀ ଗଢ଼ନ୍ତି । ଏଇଟା ତାଙ୍କର ଆଉ ଗୋଟେ ନୂଆ ଚାଲ୍ ବୋଲି ଭାବନ୍ତି ସେମାନେ, କାରଣ ତାଙ୍କ କାର୍ଯ୍ୟକଳାପରେ ଅସନ୍ତୁଷ୍ଟ ହେଇ କାରଖାନାର କର୍ତ୍ତୃପକ୍ଷ ନିଯୁକ୍ତି ଦେଇ ସାରିଥାନ୍ତି ଆଉ ଜଣେ ବରିଷ୍ଠ ଚାର୍ଟାର୍ଡ ଆକାଉଣ୍ଟାଣ୍ଟ୍‌ଙ୍କୁ । ସେ କାହାଣୀରେ ବି ଥାଏ ଆଉ ଏକ କାରଖାନର ଅଧିକାରୀ ହେବା ଲାଗି ସେ ଇସ୍ତଫା ଦେଇଛନ୍ତି । ସବୁ କାହାଣୀ ମିଛ ହେଇଯାଏ, ଯେବେ ସେ ଗେରୁଆ ଲୁଗା ପିନ୍ଧି, ନିଜ ପ୍ରିୟ ପରିବାରକୁ ଛାଡ଼ି ସୁଦୂର ଏକ ଆଶ୍ରମରେ ପହଞ୍ଚି ଯା'ନ୍ତି ତାଙ୍କ ସାଧନା ପାଇଁ ।

କାହାଣୀଗୁଡ଼ାକ ସେମିତି ବଲବଲ ହେଇ ଚାହିଁ ରହିଥାନ୍ତି ତାଙ୍କୁ । ସେମାନଙ୍କ ମୁହଁରେ ଲାଗିଥାଏ କଳାପଟି ଯିମିତି ।



# ଇତିହାସର କାନ

ଏବେ ସନ୍ଧ୍ୟାର ପ୍ରାର୍ଥନା ସମୟ । ଭଜନର ତାଳେ ତାଳେ ଭକ୍ତମାନେ ଝୁମିବା ପାଇଁ ମାନସିକ ପ୍ରସ୍ତୁତି ନେଇସାରିଥାନ୍ତି । ସେଣ୍ଟ୍ରାଲି ଏଆର କଣ୍ଡିସନ୍‌ଡ ବିରାଟ ହଲ୍‌ଟିରେ ଖୁଂଦି ହେଇଥିବା ଭକ୍ତମାନଙ୍କୁ ଅର୍ଦ୍ଧ ନିମିଳିତ ମୁଦ୍ରାରେ ସାଧୁବାବା ସମ୍ବୋଧନ କଲେ । ସମାଜରୁ ଭ୍ରଷ୍ଟାଚାରର ମୂଳୋତ୍ପାଟନ ପାଇଁ ସାଧୁବାବା ଏକ ରାଜନୈତିକ ଦଳ ଗଠନ କରିବାକୁ ଯାଉଥିବା କଥା ଭକ୍ତମାନଙ୍କ ମନରେ ସୃଷ୍ଟି କରିଥାଏ ଗୁଞ୍ଜରଣ ।

: ଇତିହାସର ବି କାନ ଅଛି । ସେ ସବୁ ଶୁଣେ, ମନେ ବି ରଖେ ଏବଂ ଅନେକ ସମୟରେ ସ୍ମୃତିଚାରଣ ବି କରେ, ଦୋହରାଏ । କିଏ ମନା କରିପାରିବ... ଦିନେ, ହଜାର ହଜାର ବର୍ଷ ତଳେ, ଏଇ ଜାଗାରେ, ଏଇମିତି ଏକ ପ୍ରାର୍ଥନା ସଭାରେ ଆମେ ସମସ୍ତେ ଏକାଠି ହେଇ ନଥିଲେ ବୋଲି ? ଘଟଣା କେବଳ ଘଟେ ନାହିଁ, ପୁନରାବୃତ୍ତି ବି ହୁଏ । ଇତିହାସ ସବୁ ଶୁଣେ, ଚୁପ୍ ରହେ.... ।

ସମବେତ ଶ୍ରୋତା ଚୁପ୍‌ଚାପ୍ ଶୁଣୁଥାନ୍ତି ପ୍ରବଚନ । ବେଶ୍ ଗମ୍ଭୀର ଓ ନୀରବ ପରିବେଶ । ହଠାତ୍ ହଲ୍‌ର ମୁଖ୍ୟ ଦ୍ୱାର ଦେଇ ପ୍ରବେଶ କଲେ ଜଣେ ଭକ୍ତ । ସବୁରି ଦୃଷ୍ଟି ତାଙ୍କ ଆଡକୁ ଢ଼ଳିଗଲା । ସାଧୁବାବା ତାଙ୍କୁ ଚାହିଁ ଟିକିଏ ସ୍ମିତ ହସିଦେଲେ । ଭକ୍ତ ଜଣକ ଅନତି ଦୂରରୁ ସାଧୁବାବାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା ଏବଂ ଧୀର ସ୍ୱରରେ କହିଲା : "ବାବା, ଇତିହାସର କ୍ରୂରତା ବି ମଣିଷକୁ ଖୁବ୍ ହନ୍ତସନ୍ତ କରେ, ତଥାପି ସେଥିରୁ ନିସ୍ତାର ନଥାଏ କାହାରି । ହଜାର ହଜାର ବର୍ଷ ତଳେ, କିଏ ଜାଣେ, ସେ କ୍ରୂରତା ଯୋଗୁଁ ଏ ଭୂଇଁ ହେଇ ନଥିବ ରକ୍ତରଂଜିତ । ଏବେ ସେଇ କ୍ରୂରତା ଦ୍ୱାରା ମୁଁ ଆକ୍ରାନ୍ତ । ଜାଣେନା, ଇତିହାସ ଏ କଥା ଶୁଣି ପାରୁଛି କି ନାହିଁ । ବାସ୍, ଏତିକି କହୁ କହୁ ନତଜାନୁ ମୁଦ୍ରାରେ ଭକ୍ତଟି ସାଧୁବାବାଙ୍କୁ ଲକ୍ଷ୍ୟ କରି ପକେଟ୍‌ରୁ ଟେକି ଧରିଲା ଅତ୍ୟାଧୁନିକ ପିସ୍ତଲ ।

'ହେ ଭଗବାନ' କହି ସେଇଠି ଟଳି ପଡ଼ିଲା ସାଧୁବାବାଙ୍କ ରକ୍ତରଂଜିତ ପାର୍ଥିବ ଶରୀର ।

ପଛରେ ରହିଗଲା ଗୁଡାଏ ଅହେତୁକ କୋଳାହଳ, ଯାହାକୁ ଇତିହାସ ଠିକ୍ ଭାବରେ ଶୁଣିପାରିଲାନି ବୋଧେ ।



# ପ୍ରାର୍ଥନା

ସକାଳୁ ସକାଳୁ ମନ୍ଦିରକୁ ଫୁଲଚାଙ୍ଗୁଡ଼ି ଆଉ ଭୋଗ ନେଇ ପ୍ରବେଶ କରୁଥିବା ତରୁଣୀଟିକୁ ଦେଖି ମନ୍ଦିର ସାମ୍ନାରେ ଚୁପ୍‌ଚାପ୍ ବସିଥିବା ସିଂହ ମୂର୍ତ୍ତୀଟି ମନକୁ ମନ ଭାବିଲା: ଈଶ୍ୱର ! ଏତେ ବର୍ଷ ହେଲା ଆପଣଙ୍କ ସେବା କଲିଣି । ମୋର ଏଇ ପ୍ରଥମ ତଥା ଶେଷ ଗୁହାରୀଟି ଘେନାକର । ଏ ତରୁଣୀଟିକୁ ମୋ ଜୀବନ ସଂଗିନୀ କର ।"

ଈଶ୍ୱର ସକାଳୁ ସକାଳୁ ଖୁସ୍ ଥିଲେ । ହସି ହସି କହିଲେ: ରେ ମୂର୍ଖ, ପ୍ରଥମେ ତୋତେ ମଣିଷ ହେବାକୁ ପଡ଼ିବ । ପଥରର ସିଂହକୁ କ'ଣ ମାନବ ଶରୀରର ସୁନ୍ଦରୀ ତରୁଣୀ ବରଣ କରିବ ? ଯା', ତୋ ମନସ୍କାମନା ପୂର୍ଣ୍ଣ ହେଉ ।"

ଅଚାନକ ପଥରର ସିଂହଟି ପାଲଟିଗଲା ଦିବ୍ୟ, ବଳିଷ୍ଠ ତଥା ସୁନ୍ଦର ଯୁବକ । ଆଖି ପିଛୁଳାକେ ପହଞ୍ଚିଗଲା ସହରର ସବୁଠୁ ପ୍ରସିଦ୍ଧ ମହାବିଦ୍ୟାଳୟର ଏକ କ୍ଲାସ୍‌ରୁମ୍‌ରେ ଯେଉଁଠି ସୁନ୍ଦରୀ ତରୁଣୀ ଅଧ୍ୟାପିକା ପଢ଼ାଉଥିଲେ ମନୋବିଜ୍ଞାନ ପାଠ୍ୟକ୍ରମ।

କ୍ଲାସ୍ ସରିବା ଉତ୍ତାରୁ ଯୁବକଟି ସୁନ୍ଦରୀ ଅଧ୍ୟାପିକାଙ୍କ ପାଖକୁ ଯାଇ ପଢ଼ାଶୈଳୀ ଓ ଗଭୀର ଜ୍ଞାନର ଭୂୟସୀ ପ୍ରଶଂସା କଲା । ଦୁହେଁ କଥାବାର୍ତ୍ତା ହେଉ ହେଉ ପହଞ୍ଚିଲେ ମହାବିଦ୍ୟାଳୟର କ୍ୟାଣ୍ଟିନ୍‌ରେ ।

: ତୁମକୁ ଆଗରୁ ମୁଁ କେଉଁଠି ଦେଖିଲା ପରି ଲାଗୁଛି: ।" କୋଲ୍‌ଡ୍ ଡ୍ରିଙ୍କ୍ ପିଉ ପିଉ ଅଧ୍ୟାପିକା ଯୁବକ ଉଦ୍ଦେଶ୍ୟରେ କହିଲେ ।

: ଅବଶ୍ୟ ଏକଥା ମୁଁ ତୁମକୁ ପଚାରିବି ବୋଲି ଭାବୁଥିଲି ।" ଯୁବକ ଉତ୍ତର ଦେଲା। ଯୁବକରୂପୀ ସିଂହଟି ତା'ର ମନ୍ଦିରର ଜାଗା ବିଷୟରେ କହିବା ମାତ୍ରେ ଅଧ୍ୟାପିକା ଜଣକ ତତ୍‌କ୍ଷଣାତ୍ ଉତ୍ତର ଦେଲେ ।

: ମୋର ଘର ବି ସେଇଠି ।

ଯୁବକର ଉତ୍ସାହ ଦ୍ୱିଗୁଣିତ ହେଲା ଏବଂ ନିଜ ମନର କଥାକୁ ଆଉ ବେଶି ସମୟ ଲୁଚାଇ ରଖି ନ ପାରି ଅଧ୍ୟାପିକାଙ୍କୁ ପ୍ରେମ ନିବେଦନ କଲା ।

: ତୁମେ ଭୁଲ୍ ରାସ୍ତାରେ ଯାଉଛ ।

: କିମିତି ?

: କାରଣ ତୁମ ଭଳି ମୁଁ ବି ସେଇ ମନ୍ଦିର ସାମ୍ନାର ସିଂହୀ । ଈଶ୍ୱରଙ୍କ ବର ପାଇ ଅଧ୍ୟାପିକା ରୂପରେ ଆସିଥିଲି ମୋର ମନର ମଣିଷକୁ ଖୋଜିବାକୁ, ଠିକ୍ ତୁମେ ଯିବା ପରେ ପରେ ।

ନିଜ ମନକୁ ବୁଝାଇବା ଉଦ୍ଦେଶ୍ୟରେ ଏଥର ଯୁବକଟି କହିଲା : ଉଇ ଆର୍ ମେଡ୍ ଫର୍ ଇଚ୍ ଅଦର୍ ।"

ଏତିକି ତା ପାଟିରୁ ବାହାରିଛି କି ନାହିଁ ଦୁହେଁ ପବନରେ ମିଳେଇଗଲେ ଏବଂ ସନ୍ଧ୍ୟା ପୂର୍ବରୁ ପୂର୍ବବତ୍ ଦେଖାଗଲା ସିଂହମୂର୍ତ୍ତିଯୁଗଳ ମନ୍ଦିର ସାମ୍ନାରେ ଚୁପ୍‌ଚାପ୍ ବସିଛନ୍ତି ।



# ଯୁଦ୍ଧର ପ୍ରଥମ ଦିବସ

ବିବାହ ପରେ ପୁଅ ଆଉ ବୋହୂ ଫେରି ଆସିଥିଲେ ଘରକୁ । ସନ୍ଧ୍ୟାରେ ରିସେପସନ୍ ପାଇଁ ପ୍ରସ୍ତୁତି ଜୋରଦାର ଚାଲିଥାଏ । ଘରେ ଆରମ୍ଭ ହୋଇଯାଇଥାଏ ବନ୍ଧୁବାନ୍ଧବ ଓ ପରିଜନଙ୍କ ହୋ-ହଲ୍ଲା। ଗୃହକର୍ତ୍ତା ଭାବେ ଏକ ଜରୁରୀ କାମରେ ତାଙ୍କ ଖୋଜା ପଡ଼ିଲା, ମାତ୍ର ସେ ମିଳୁ ନଥାନ୍ତି ।

ଚାରି ପାଞ୍ଚ ଘଣ୍ଟା ଖୋଜିବା ପରେ, ସମସ୍ତଙ୍କ ଆଶଙ୍କାକୁ ଦୂର କରି ସେ ଫେରିଲେ ତାଙ୍କ ଗାଡ଼ିରେ । ମାତ୍ର ତାଙ୍କୁ ଦେଖି ଚମକି ପଡିଲେ ସମସ୍ତେ । ଲାଗୁଥିଲା ଦଶବର୍ଷ ବୟସ ଖସିଯାଇଛି ତାଙ୍କର । ସହରର ସବୁଠୁ ନାମୀ ବିଉଟି ପାର୍ଲରରୁ ଫେରିଥିଲେ ସେ । ବୋହୂ ନୁହେଁ, ରିସେପସନ୍‌ରେ ଅମନ୍ତ୍ରିତ ଅତିଥିମାନଙ୍କୁ ଆକର୍ଷିତ କରିବା ଥିଲା ତାଙ୍କର ସନ୍ଧ୍ୟାର ମୁଖ୍ୟ ଏଜେଣ୍ଡା ।

ସେଦିନ ସନ୍ଧ୍ୟାରେ ହିଁ ବାଜିଥିଲା ଯୁଦ୍ଧ ଘୋଷଣାର ପ୍ରଥମ ବିଗୁଲ ।



# ଦୂର ପାହାଡ଼

ସାରା ଜୀବନ ସେ ନିଜ ସହରଠୁଁ ଦୂରରେ ରହିଲା ନିଜ ସ୍ୱାମୀ ଆଉ ପିଲାପିଲିଙ୍କ ଗହଣରେ । ବେଳେବେଳେ ନିଜ ରାଜ୍ୟର ବାହାରେ ବି ତାକୁ ଜୀବନ ବିତେଇବାକୁ ହେଲା ସ୍ୱାମୀଙ୍କ ଚାକିରୀ ସ୍ଥାନ ବଦଳୁଥିବାରୁ । ଦୂରରେ ଥିଲେ ବି ନିଜ ବାପା, ମାଆ, ବିବାହିତ ଭାଇ ତଥା ଭଉଣୀମାନଙ୍କ ସହ ସେ ଟେଲିଫୋନ୍ ଜରିଆରେ ବରାବର ଯୋଗାଯୋଗ ରଖୁଥିଲା । ସମସ୍ତଙ୍କ ସ୍ନେହ ଓ ଶ୍ରଦ୍ଧାଭାଜନ ହୋଇ ସେ ନିଜକୁ ଅନେକ ସମୟରେ ଧନ୍ୟ ମଣୁଥିଲା ।

ସମୟ ଗଡ଼ି ଚାଲିଥାଏ ନଈ ସୁଅପରି । ବାପା ଚାଲିଗଲେ ଆରପାରିକୁ, ଭାଇ ଆଉ ଭଉଣୀମାନେ ନିଜ ନିଜ ପାରିବାରିକ ଜଂଜାଳରେ ଉବୁଟୁବୁ ହେବା ଆରମ୍ଭ କଲେ । ସେ ବି ଫେରି ଆସିଲା ତା'ର ପରିଚିତ ସହରକୁ ସ୍ୱାମୀଙ୍କ ଅବସର ଗ୍ରହଣ ପରେ ।

ମାତ୍ର କେଇଦିନ ପରେ ତା'ର ପରିଚିତ ସହର ତାକୁ ଲାଗିଲା ଖୁବ୍ ଅପରିଚିତ । ଚିହ୍ନା ମୁହଁମାନେ ତାକୁ ଲାଗୁଥିଲେ ଅଚିହ୍ନା ଓ ଅଜଣା । ଏପରିକି ନିଜ ଭାଇ କିମ୍ୱା ଭଉଣୀମାନଙ୍କ ସହ ପଦେ କଥା ହେବା ପାଇଁ ତର ନଥିଲା । ଲାଗୁଥିଲା ତା'ର ଶ୍ୱାସରୁଦ୍ଧ ହେଇଯିବ ଯେମିତି । ଦିନେ ସମସ୍ତଙ୍କ ଅଲକ୍ଷ୍ୟରେ ସେ ନିଜେ ନିଷ୍ପତ୍ତି ନେଲା ଯେ ସେ ଏ ସହର ଛାଡ଼ି ଚାଲିଯିବ, କେବେ ବି ଲେଉଟିବନି ସେଠାକୁ ।



# ଜିନ୍

ଯଦିଓ ସେ ଥିଲା କାରଖାନାର ଜଣେ ବିରିଷ୍ଠ ଅଧିକାରୀ, ମାତ୍ର ଅଧସ୍ତନ କର୍ମଚାରୀଙ୍କ ସୁନ୍ଦରୀ ପତ୍ନୀମାନଙ୍କ ଉପରେ ତା'ର ନଜର ରହୁଥିଲା । କ୍ଷମତା-ଲିପ୍ସୁ ସ୍ୱାମୀମାନଙ୍କୁ ବିଭିନ୍ନ କାମର ଆଳରେ ସେ ଟୁରରେ ପଠାଇ, ଅହେତୁକ ପ୍ରମୋଶନ ଦେଇ ସେମାନଙ୍କ ବିବଶତାର ଫାଇଦା ନେବାକୁ ଚେଷ୍ଟା କରୁଥିଲା । ଲୋଭଗ୍ରସ୍ତ କେହି କେହି କନିଷ୍ଠ କର୍ମଚାରୀ ତା'ର କପଟ ଜାଲରେ ଛନ୍ଦିହେଇ ପଡୁଥିଲେ ଏବଂ ସମବୟସ୍କ ପିଲାଟି ପାଖରୁ ଆଉ ଜଣେ ଚାଟୁଥିବା ଲଲିପପ୍ ଛଡାଇ ନେବା ପରି ସେ ଅଧସ୍ତନଙ୍କ ପତ୍ନୀଙ୍କୁ ଚାଟିବାରେ ବ୍ୟସ୍ତ ରହୁଥିଲା । ସମୟ ବଦଳିଲା । ଆକସ୍ମାତ୍ ଦିନେ ସେ ଖବର ପାଇଲା ଯେ କଲେଜ୍‌ରେ ପଢୁଥିବା ତା'ର ବଢ଼ନ୍ତା ଝିଅ ଗୋଟେ ବାରବୁଲା ସାଙ୍ଗରେ ପଳେଇଯାଇଛି । ସାରାଜୀବନ ଅନେକ ଅସହାୟ ସ୍ୱାମୀଙ୍କୁ ବିବଶତାର କବରକୁ ଠେଲି ଦେଇଥିବା ସେଇ ବରିଷ୍ଠ ଅଧିକାରୀଟି ନିଜେ ପହଞ୍ଚିଯାଇଛି ଅନ୍ଧକାର ଗର୍ତ୍ତ ଭିତରେ ।

ପରିଦିନ ସକାଳେ ଲୋକେ ତା'ର ଲାସ୍ ଦେଖି କଥାବାର୍ତ୍ତା ହେଉଥିଲେ କିଭଳି ନିଜ ଜିନ୍‌ର ଶିକାର ସେ ହେଇଛି ।



# ସ୍କାଣ୍ଡାଲ୍

ନୂଆ କରି ଚାଲିଥିବା କାରଖାନାର ଅବିବାହିତ ତଥା ବୟସ୍କ ଓ ମୁଖ୍ୟ କାର୍ଯ୍ୟନିର୍ବାହୀଙ୍କ ପାଖରେ ଥିବା ମାଈ କୁତୀଟି ଧଳା ରଙ୍ଗର ତିନୋଟି ଛୁଆ ଜନ୍ମ କରିବା ଥିଲା ଆଖପାଖ ଅଞ୍ଚଳ ପାଇଁ ସୁଖପ୍ରଦ ଖବର । ମାତ୍ର ସମସ୍ତଙ୍କୁ ଚକିତ କରିଦେଇ ତିନୋଟିଯାକ କୁକୁର ଛୁଆ ଅନ୍ତର୍ଦ୍ଧାନ ହେଇଯିବା ମାଲକାନଗିରିର ଜିଲ୍ଲାପାଳଙ୍କୁ ମାଓବାଦୀମାନେ ଅପହରଣ କରି ନେଇଯିବାଠାରୁ ବି ଥିଲା ଅଧିକ ଚାଞ୍ଚଲ୍ୟକର ଖବର ।

ମୁଖ୍ୟ କାର୍ଯ୍ୟନିର୍ବାହୀଙ୍କ ବଙ୍ଗଳାଠାରୁ ଅନତିଦୂରରେ ରହୁଥିବା ଦଳେ ଚାଇନିଜ୍ ଏ ତିନୋଟିଯାକ କୁକୁର ଛୁଆଙ୍କୁ ନେଇ ମାରି ଖାଇଥିବା ଭଳି ଏକ ବଦ୍ଧମୂଳ ଧାରଣାର ଶିକାର ହେଇଥିଲେ ସେ । ବଙ୍ଗଳାର ମୁଖ୍ୟ ଫାଟକ ସାମ୍ନାରେ ପ୍ରହରା ଦେଉଥିବା ସିକ୍ୟୁରିଟି ଗାର୍ଡଟି ଜଣାଇଦେଲା ଯେ ସେଇ କୁକୁର ଛୁଆମାନଙ୍କୁ ଜଣେ ଚାଇନିଜ୍ ସିଝା ଅଣ୍ଡା ଖୁଆଉଥିବା ସେ ନିଜ ଆଖିରେ ଦେଖିଛି । କେରାଣ୍ଡି ଥୋପ ପକାଇ ବାଳିଆ ମାଛ ଧରିବା ସେମାନଙ୍କ ପ୍ରକୃତି । ଗଢ଼ା ହେଉଥିବା କାରଖାନାର ଯନ୍ତ୍ରପାତିକୁ ଚାଲୁ କରିବା ଲାଗି ଏଇ ଚାଇନିଜ୍ ଦଳଙ୍କୁ ଭଡାରେ ଅଣାଯାଇ ଅନତିଦୂରରେ ରଖାଯାଇଥିଲା ।

ମନେପଡୁଛି ।

୧୯୫୦ରେ ଗୋଟେ ଫିଲ୍ମର ନିର୍ଦ୍ଦେଶନା ଦେଇଥିଲେ ଜାପାନର ନିର୍ଦ୍ଦେଶକ ଆକିରା କୁରୋସାୱା ଯାହାର ଶିର୍ଷକ ଥିଲା ସ୍କାଣ୍ଡାଲ୍। ଜଣେ ଚିତ୍ରଶିଳ୍ପୀ ଓ ଜଣେ ଲୋକପ୍ରିୟ ଅଭିନେତାଙ୍କୁ ଅଯଥାରେ କୁତ୍ସରଟନା ଭିତରକୁ ଠେଲିଦେବା ଏବଂ ଜଣେ ଓକିଲଙ୍କ ଅନୈତିକ ତଥା ବିବାଦସ୍ପଦ ଭୂମିକା ସତ୍ତ୍ୱେ ବି ଅଦାଲତ ଦୁଇ ଯୁବ ଚିତ୍ରକର ଏବଂ ଯୁବା ଅଭିନେତ୍ରୀଙ୍କୁ ସମ୍ମାନର ସହ ଦୋଷମୁକ୍ତ କରିବା ଘଟଣା ଏଇ ଚଳଚିତ୍ରରେ ବେଶ୍ ସୁନ୍ଦର ଭାବେ ଚିତ୍ରିତ ।

ତେବେ ଖୁସିରେ କୁକୁର ଛୁଆଙ୍କୁ ଅଣ୍ଡା ଖାଇବାକୁ ଦେଉଥିବା ଚାଇନିଜ୍‌କୁ ଅବିଶ୍ୱାସର କାଠଗଡ଼ାରେ ଠିଆ କରାଇବା ଏବଂ ନିଜ କର୍ତ୍ତବ୍ୟରେ ଅବହେଳା କରିଥିବା ସିକ୍ୟୁରିଟି ଗାର୍ଡଟିର ବୟାନରେ ଆମେ ସତ୍ୟାନୁସନ୍ଧାନର ରାସ୍ତାକୁ ବନ୍ଦ କରିଦେବା କ'ଣ ଉଚିତ ହେବ ?



# ଆଙ୍ଗୁଠି

'ମହାଭାରତ' ପଢ଼ିବା ଛଡା ତୀର ଚଳାଇବା ମୋ' ଜେଜେବାପାଙ୍କର ଥିଲା ଆଉ ଏକ ସଉକ । ତାଙ୍କ ସେବା କରୁଥିବା ଚାକର ପିଲାଟି ଦିନେ ସାହସ ସଞ୍ଚୟ କରି କହିଲା : ତୀରନ୍ଦାଜ ହବାକୁ ମୋର ଇଚ୍ଛା, ଆପଣ ଶିଖେଇ ଦିଅନ୍ତେନି ?"

: ତୋ ଡ଼ାହାଣ ହାତ ବୁଢ଼ା ଆଙ୍ଗୁଠିଟା ମତେ ଦେଲୁ !" ଜେଜେଙ୍କ କଥା ସରିଚି କି ନାହିଁ ଟୋକାଟା ଫଟ୍‌କିନା କାଟିଦେଲା ବୁଢ଼ା ଆଙ୍ଗୁଠିଟାକୁ ।

ଅନେକ ବର୍ଷ ବିତିଗଲା, ଜେଜେବାପା ମରିଗଲେ । ହେଲେ ଚାକର ପିଲାଟା ରହିଗଲା ଆମ ପାଖରେ । ବୁଢ଼ା ହେଇ ଯାଇଥାଏ। ଦିନେ ନିରୋଳା ସମୟ ଦେଖି ତାକୁ ମୁଁ ଚୁପ୍‌କିନା ପଚାରି ଦେଲି : ତୀର ଚଳାଇବାକୁ ତୋର କେବେ ଇଚ୍ଛା ହଉନି ?"

ପକେଟ୍‌ରୁ ବାହାର କରି ହାତରେ ତା'ର ମୁଁ ଧରେଇଦେଲି ରକ୍ତ ଜଡ଼ସଡ଼ ହେଇଥିବା ସେ ଆଙ୍ଗୁଠିଟା । କଟା ଯାଗାରେ ସେଇଟାକୁ ଯୋଡ଼ିବା ଆଗରୁ ସେ ବି ମତେ ପ୍ରତିଦାନରେ ଧରାଇ ଦେଇଥିଲା ଜେଜେବାପାଙ୍କ ପ୍ରିୟ ବହି 'ମହାଭାରତ' ।



# ମୂଷାଯନ୍ତା

ସାନ ପୁଅ ହିଁ ପ୍ରଥମେ ଖବର ଦେଲା ଯେ ଗାଡ଼ି ଭିତରେ ଗୋଟେ ମୂଷା ପଶୁଛି କିଛି ଦିନ ହେଲା । ଆମେରିକା ବାସୀ ଓସାମା ବିନ୍ ଲାଦେନ୍ ନାଁ ଶୁଣିବା ମାତ୍ରେ ଯିମିତି ଚମକି ପଡନ୍ତି, ଘରେ ସମସ୍ତେ ଏକ ଏ କଥା ଶୁଣୁ ଶୁଣୁ ଡରି ଗଲେ । ମୂଷାଟା ନିଶ୍ଚୟ ଗାଡ଼ି ଭିତରର ୱ୍ୟାରିଂ କାଟିଦେବ, ଇଞ୍ଜିନ୍ ଭିତରେ ବି ପଶି ଗଡବଡ଼ କରିଦେଇପାରେ ।

ଦଶମ ଶ୍ରେଣୀରେ ପଢୁଥିବା ସାନପୁଅ, ଯିଏ ଗାଡ଼ିମାନଙ୍କ ସଂପର୍କରେ ନିଜକୁ ନିଜେ ବିଶାରଦ ବୋଲି ଭାବେ, ଏଥିରୁ ରକ୍ଷା ପାଇବା ଲାଗି ମୂଷା ଯନ୍ତା ଗାଡ଼ି ଭିତରେ ରଖିବାକୁ ପରାମର୍ଶ ଦେଲା । ତାହା ହିଁ ହେଲା । ଦୁଇଟା ଯନ୍ତା ଭିତରେ ରଖିଲୁ-ଗୋଟେ ଡ୍ରାଇଭର ସିଟ୍‌ରେ ଆଉ ଗୋଟେ ଗାଡ଼ିର ଡିକି ଭିତରେ । କାରଣ ଡିକି ଭିତରେ ବି ମୂଷା ଲଣ୍ଡି ପଡ଼ିଥିବା ସେ ଆବିଷ୍କାର କରିଥିଲା ।

ଦୁଇ ଦୁଇଟା ମୂଷା ଯନ୍ତା ରଖିବାପରେ ବି ମୂଷାଟି ଧରା ପଡୁ ନଥିବା ଆମ ବିବ୍ରତର କାରଣ ଥିଲା । ଆମର ସମସ୍ତ ଯୋଜନାକୁ ଉପହାସ କରି ମୂଷାଟି ଏଣିକି ଅଧିକରୁ ଅଧିକ ଲଣ୍ଡି ଡ୍ରାଇଭର ସିଟ୍ ଏବଂ ଡିକିରେ ଛାଡ଼ି ଚାଲିଯାଉଥିଲା ।

ଅନ୍ୟୋପାୟ ନ ପାଇଁ, ବିଶେଷଜ୍ଞ ଏବଂ ଶୁଭେଚ୍ଛୁଙ୍କ ପରାମର୍ଶ କ୍ରମେ ଗୋଟିଏ ରବିବାର ଦିନ ଗାଡ଼ି ପହଂଚିଗଲା ମରାମତି ଦୋକାନରେ। ଦୋକାନର ମୁଖ୍ୟ ଯା ଇଚ୍ଛା ତା ଭାଷାରେ ପ୍ରଥମେ ଗାଳି ଦେଲେ ଗାଡ଼ି ତିଆରି କରିଥିବା କଂପାନୀକୁ ଓ ତାର ଡ଼ିଜାଇନ୍‌ରକୁ । ତାଙ୍କ କହିବା କଥା ଯେ ଗାଡ଼ି ଭିତରେ ସେ ଏତେ ଗୁଡାଏ କଣା ଛାଡ଼ି ଦେଇଛନ୍ତି ଯେ ମୂଷାମାନଙ୍କ ଅବାଧ ପ୍ରବେଶକୁ ରୋକିବା ପାଇଁ ଅନ୍ତତଃ ଅଧ-ଡଜନେ ବିଲେଇ ପୋଷିବାକୁ ପଡ଼ିବ ।

ମରାମତି ଦୋକାନରୁ ଫେରିବା ପରେ ଅନେକଦିନ ଯାଏ ଆମେ କାର୍‌ର ଅନ୍ଦିସନ୍ଧିରେ ମୂଷା ଲଣ୍ଡି ଖୋଜିଲୁ, ହେଲେ ଗୋଟେ ବି ଲଣ୍ଡି ନ ପାଇ ଖୁବ୍ ଆଶ୍ୱସ୍ତ ହେଲୁ । ଯା' ହେଉ ମେକାନିକ୍‌ଟିର ଯାଦୁକରୀ ହାତର କରିସ୍ମା ଯୋଗୁଁ ମୂଷାଟି ହଠାତ୍ ଗାୟବ ହୋଇଗଲା।

ମାତ୍ର ସେ କରିସ୍ମାର ଆୟୁଷ ବେଶୀଦିନ ନଥିଲା । ହଠାତ୍ ସବୁ ବିଶ୍ୱାସ ଉପରେ ପାଣି ଫିଙ୍ଗି ଦିନେ ଦେଖାଗଲା ଦୁଇ ଚାରିଟା ମୂଷା ଲଣ୍ଡି ଡ୍ରାଇଭରର ସିଟ୍‌ରେ । କାହା ଉପରେ ଏବେ ଦୋଷ ଲଦିବି ? କାର ତିଆରି କରିଥିବା କଂପାନୀର ଡ଼ିଜାଇନ୍‌ର ଉପରେ ନା କାର୍ ମରାମତି କରିଥିବା ମେକାନିକ୍ ଉପରେ ନା ଘରର ଆଖପାଖର ଅବାର୍ଜନାମୟ ପରିବେଶ ଉପରେ ଯେଉଁଠି ନିଜର ବଂଶ ବୃଦ୍ଧି ପାଇଁ ମୂଷାଙ୍କୁ ଅନୁକୂଳ ପରିସ୍ଥିତି ଅପେକ୍ଷା କରି ରହିଥିଲେ ? ମୋ ଅସହାୟତାର ଯଦି କେହି ବିଶ୍ୱସ୍ତ ସାଥି ଥିଲା, ତାହା ହେଉଛି ମୋର ଦୀର୍ଘଶ୍ୱାସ ।

କୌରବଙ୍କ ସଭାରେ ବସ୍ତ୍ର ହରଣବେଳେ ଦ୍ରୌପଦୀ ଅସହାୟ ହେଇ ଦୁଇହାତ ଟେକି ଦେଇଥିଲେ, ମୁଁ କିଂକର୍ତ୍ତବ୍ୟ ବିମୂଢ଼ ହେଇ ମୂଷା ଯନ୍ତା ଦୁଇଟିକୁ ଫୋପାଡି ଦେଇଥିଲି ଘରସାମ୍ନା ପାଚେରୀ ଆରପଟ ଅଳିଆ ଗଦାକୁ ।

ସବୁଠାରୁ ମଜା କଥା ହେଉଛି, ସେଇ ଦିନଠୁ ଗୋଟେ ବି ମୂଷା ଲଣ୍ଡି ପାଇ ନଥିଲି କାର୍ ଭିତରେ ।



# ତାଙ୍କ ଭୂତ

ଲୋକେ ଜାଣନ୍ତି ଯେ ସାରା ଜୀବନ ଶବ୍ଦ ପଛରେ ସେ ଧାଇଁ ଧାଇଁ ନୟାନ୍ତ ହେଇଛନ୍ତି । କିନ୍ତୁ ତାଙ୍କର ନିଜସ୍ୱ ଅନୁଭବକୁ ସେ କିମିତି ଏଡାଇ ପାରିବେ ? ଖୁବ୍ ହନ୍ତସନ୍ତ ହେଇଛନ୍ତି ସେ ଜୀବନକାଳରେ ଅହରହ ପୁରସ୍କାର ଆଉ ମାନପତ୍ର ପଛରେ ଗୋଡେଇ ଗୋଡେଇ । ସତେ ଯେମିତି ପୁରସ୍କାର ଗୁଡାକ ତ୍ରସ୍ତ ହରିଣୀ ଆଉ ସେ ଜଣେ ଅଭିଜ୍ଞ ଶିକାରୀ। ଅନୁଶୋଚନା ଏତିକି କେବଳ ଯେ ଗୋଟିଏ ହରିଣୀ ତାଙ୍କୁ କେବେ ବି ଧରା ଦେଲା ନାହିଁ । ସେ ହରିଣୀଟିର ନାଁ ହେଉଛି 'ଭାରତ ଗୌରବ'। ସେ ଅନୁଶୋଚନାର ବେତାଳକୁ କାନ୍ଧରେ ବୋହି ବୋହି ଦିନେ ସେ ଇହଧାମରୁ ବିଦାୟ ନେଲେ ।

ଯଦିଓ ଦେଶର ଖବର କାଗଜ ସବୁ ତାଙ୍କ ମହିମା ଗାଇବାରେ ଆଦୌ ଅକୃପଣ ନଥିଲେ ମାତ୍ର ମରିବା ଦିନର ଦୃଶ୍ୟଟି ଥିଲା ଖୁବ୍ ବିକଳ ଓ ମାର୍ମିକ ।

ମରିବା ଆଗରୁ ନିଜର ସ୍ୱଜନମାନଙ୍କୁ ସେ ଅନୁରୋଧ କରିଥିଲେ ତାଙ୍କୁ ବେଡରୁମ୍‌ରୁ ନେଇ ଡ୍ରଇଁରୁମ୍‌ରେ ଶୁଆଇ ଦେବା ଲାଗି । ଇଚ୍ଛାନୁଯାୟୀ ତାହା ହିଁ ହେଲା। ମୃତ୍ୟୁ ପୂର୍ବରୁ ସେ ଖୁବ୍ ଉତ୍ସାହର ସହିତ ଡ୍ରଇଁରୁମ୍‌ର କାନ୍ଥରେ ଝୁଲୁଥିବା ବିଭିନ୍ନ ପୁରସ୍କାରର ମାନପତ୍ରକୁ ମନଭରି ପଢ଼ିଦେଲେ ଓ ସ୍ମୃତିଚାରଣ ବି କଲେ ମନେ ମନେ। ଧାଡ଼ି ଧାଡ଼ି ହେଇ ଝୁଲୁଥିବା ମାନପତ୍ରଙ୍କ ଗହଣରେ ଠାଏ ରହିଥିଲା ଶୂନ୍ୟ ସ୍ଥାନଟିଏ ସେଇଟି ଥିଲା 'ଭାରତ ଗୌରବ' ପାଇଁ ସୁରକ୍ଷିତ ।

ସେଇ ଶୂନ୍ୟ ସ୍ଥାନକୁ ଚାହିଁ ଚାହିଁ ତାଙ୍କ ପ୍ରାଣବାୟୁ ଶୂନ୍ୟରେ ମିଳେଇ ଗଲା । ଏବେ ମୃତ୍ୟୁର ଦୁଇ ବର୍ଷ ପରେ ତାଙ୍କୁ ମିଳିଛି ମରଣୋତ୍ତର 'ଭାରତ ଗୌରବ' ସମ୍ମାନ । ସବୁ ଖବରକାଗଜ ଓ ଚ୍ୟାନେଲ୍ ଶୁଆ ଭଳି ରଟି ଚାଲିଛନ୍ତି ଏ କଥା ।

ନୂଆ ହେଇ ଲେଖାଲେଖି କରୁଥିବା ଯୁବ କବିଟିଏ କିନ୍ତୁ ତାଚ୍ଛଲ୍ୟ କରି ଗୋଟେ ସଭାରେ କହିଦେଲା : ପୁରସ୍କାର ପାଇବା ଲାଗି ମଣିଷମାନେ ଲବି କରନ୍ତି ବୋଲି ଶୁଣିଥିଲି, ହେଲେ ପ୍ରଥମ ଥର ପାଇଁ ଅନୁଭବ କଲି ଯେ ଭୂତମାନେ ବି କମ୍ ଲବି କରନ୍ତିନି ଏଥିପାଇଁ ।



# ଅଦିନ ମେଘ

ପରିବେଶର ପ୍ରଦୂଷଣ, ସ୍ଥାନୀୟ ଲୋକଙ୍କ ସମସ୍ୟା ପ୍ରତି ଅନୁଦାର ତଥା ବିଭିନ୍ନ ଶିଳ୍ପ ଆଇନ୍ ଉଲ୍ଲଙ୍ଘନ କରିଥିବା ଅଭିଯୋଗରେ ବଦନାମ କରିବା ପାଇଁ କେତୋଟି ଖବରକାଗଜ ପକ୍ଷରୁ ଏକ ରକମ ସୁଶୃଙ୍ଖଳିତ ଉଦ୍ୟମ ଆରମ୍ଭ ହେଇ ଯାଇଥିଲା ନୂଆ କରି ଗଢ଼ି ଉଠୁଥିବା ଶିଳ୍ପ ସଂସ୍ଥାଟି ବିରୁଦ୍ଧରେ ।

ଅଥଚ ଶିଳ୍ପ ସଂସ୍ଥା ତରଫରୁ କେବେ ବି ପ୍ରତିବାଦର ସ୍ୱର ଉଠି ନଥିଲା ଯଦିଓ ଅନେକ ଖବର ଥିଲା କଳ୍ପନା ପ୍ରସୂତ ତଥା ମନ୍ଦ ଉଦ୍ଦେଶ୍ୟ ପ୍ରଣୋଦିତ ।

ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁଯାୟୀ ପାଖ ଗାଁରେ ଦିନେ କାରଖାନା ତରଫରୁ ଆୟୋଜିତ ହେଲା ମାଗଣା ସ୍ୱାସ୍ଥ୍ୟ ଶିବିର। ଆଖପାଖର ଅନେକ ବୟସ୍କ ଲୋକେ ସେ ଶିବିରରେ ପହଂଚି ସ୍ୱାସ୍ଥ୍ୟ ପରୀକ୍ଷା କରିବା ସହ ମାଗଣା ଔଷଧ ନେଇ ନିଜ ନିଜ ଗାଁକୁ ବାହୁଡିବାବେଳେ ଅଦିନିଆ ମେଘର ଶିକାର ହେଲେ । ଘରେ ପହଂଚି ସେମାନଙ୍କ ଭିତରୁ ଅଧିକାଂଶ ଥଣ୍ଡା, କାଶ ଓ ଜ୍ୱରରେ ପଡ଼ିଗଲେ ।

ପରଦିନ ଖବର କାଗଜର ପୃଷ୍ଠା ମଣ୍ଡନ କରି ପ୍ରକାଶିତ ହେଲା : ଶିଳ୍ପ ସଂସ୍ଥାର ଔଷଧ ଖାଇ ଅଧିକାଂଶ ଲୋକ ହଠାତ୍ ବେମାର । ପ୍ରଶାସନିକ ତଦନ୍ତ ପାଇଁ ବିଭିନ୍ନ ମହଲରୁ ଦାବୀ ।"

ସବୁଥର ପରି ଏଥର ବି ଶିଳ୍ପସଂସ୍ଥାର କର୍ତ୍ତୃପକ୍ଷ ନିରୁତ୍ତର ।



# ହୁଙ୍କା

ଜେଜେବାପା ହିଁ ଥିଲେ ତା'ର ସବୁଠୁଁ ବଡ଼ ସାଙ୍ଗ, ନୂଆ କରି ସ୍କୁଲକୁ ଯାଉଥିବା ସମୟକୁ ବାଦ୍ ଦେଲେ ଅଧିକାଂଶ ସମୟ ହିଁ ସେ ଜେଜେଙ୍କ ସହ ବିତାଉ ଥିଲା ଦିନରେ ।

ତାଙ୍କ ସହ ଖାଇବା, ଗପ କରିବା, ସନ୍ଧ୍ୟାରେ ବୁଲିବା, ଖେଳିବା, ବଜାରକୁ ଯିବା, ଗୀତ ଗାଇବା, କାହାଣୀ ଶୁଣିବା, ଗୁଡ଼ି ଉଡେଇବା ଆଦି ଯାବତୀୟ କାମରେ ଜେଜେବାପା ଥିଲେ ତାର ସହଚର । ଖରାରେ ସିଝିବା, ବର୍ଷାରେ ତିନ୍ତିବା, ନଈରେ ଖଣ୍ଡି ପହଁରା ମାରିବା, ଗଛରେ ଚଢ଼ିବା ଭଳି ଦୁଃସହାସିକ କାମରେ ତା'ପାଖେ ଥା'ନ୍ତି ଜେଜେବାପା ।

ଦିନେ ଆସନ୍ନ ସଂଧ୍ୟାରେ ଦୁହେଁ ବୁଲୁଥାନ୍ତି ନିଜ ଗାଁଠୁଁ ଅଳ୍ପ ଦୂରରେ ଥିବା ନିର୍ଜନ ପଡ଼ିଆରେ । କାହାଣୀର ପସରା ମେଲିଥାଏ । ହଠାତ୍ ଚୁପ୍ ହେଇ ଠିଆ ହେଇ ଗଲେ ଜେଜେବାପା । ଅଳ୍ପଦୂରରେ ଥିବା ଗଛଟି ଆଡକୁ ଚାହିଁ ରହିଥା'ନ୍ତି ଅପଲକ ନୟନରେ

: କ'ଣ ହେଲା ଜେଜେ ?' ସେ ପଚାରିଲା । ଜେଜେବାପା ଚୁପ୍ ରହିଲେ କିଛି ସମୟ ।

ତା ମନରେ ଛନକା ପସିଲା । କ'ଣ ଭୂତ ଦେଖିଲେ କି ଜେଜେ ? ପୁଣି ସନ୍ଦେହ ହେଲା ଯେ ଭୂତମାନେ ତ ଦିନବେଳା ବାହାରନ୍ତିନି । ତେବେ ସେ ଏମିତି ଠିଆ ହୋଇଗଲେ ଚୁପ୍‌ଚାପ କାହିଁକି ?

: ସେ ନିମ ଗଛକୁ ଦେଖୁଛୁ ?" ଜେଜେ ଯଥା ସମ୍ଭବ ଗାମ୍ଭୀର୍ଯ୍ୟ ରଖି ପଚାରିଲେ ।

ନିମ ଗଛ ତା' ପାଇଁ ଅପରିଚିତ ନ ଥିଲା । ତାଙ୍କ ଘର ପଛପଟେ ଦୁଇଟା ବଡ ବଡ ନିମ ଗଛ ଥିବା ସେ ଜାଣେ । ଅନେକ ଥର ଜେଜେଙ୍କ ସହ ସକାଳୁ ସକାଳୁ ସେ ଗଛର ଡାଳ ଭାଙ୍ଗି ସେ ଦାନ୍ତକାଠି ବନେଇଛି । କେବେ କେବେ ପାଚିଲା ନିମ କୋଳି ବି ଗଛତଳୁ ଗୋଟେଇଛି, ପକେଟ୍‌ରେ ଭର୍ତ୍ତି କରି ମା'ଠୁ ଗାଳି ବି ଖାଇଛି ।

: ସେଇ ଝାମ୍ପୁଲା ନିମଗଛ ପାଖରେ ଥିବା ହୁଙ୍କା ଆଖିରେ ପଡୁଚି ତୋର ?" ଜେଜେ ତାକୁ ପଚାରିବା ବେଳେ ବଲବଲ ଆଖିରେ ସେଇ ଆଡକୁ ଚାହିଁଥା'ନ୍ତି ।

ଏ କଥାର ଅର୍ଥ ତାକୁ ଜଣା ପଡୁ ନଥାଏ। ସେ ବି ଜେଜେଙ୍କ ପରି ସେଇ ହୁଙ୍କା ଆଡକୁ ଚାହିଁଥାଏ । ଜେଜେ ପୁଣି ଏଥର ପାଟି ଖୋଲିଲେ,

: ଏଇଟା ଆଉ ନିମ ଗଛ ନୁହେଁ । 'ଦାରୁ' ପାଇଁ ବାଟ ସଫା ହେଇଗଲାଣି" କହୁ କହୁ ସେ ବୃକ୍ଷ ଉଦ୍ଦେଶ୍ୟରେ ହାତ ଯୋଡ଼ି ପ୍ରଣାମ କଲେ ।

ସେ ଦିନ ରାତିରେ ଶୋଇବା ଆଗରୁ ନିମ ଗଛ କିପରି 'ଦାରୁ' ହୁଏ 'ଦାରୁ'ରୁ କିମିତି 'ଦାରୁବ୍ରହ୍ମ'ଙ୍କ ସୃଷ୍ଟି ସେ କଥା ଜେଜେ ବୁଝାଉ ଥିବା ବେଳେ ତା ଆଖି ପତା ଲାଗି ଆସୁଥିଲା । ହେଲେ ନିର୍ଜନ ପଡ଼ିଆରେ ଥିବା ନିମଗଛ ପାଖରେ ଥିବା ହୁଙ୍କାରେ କଳା ନାଗଟିଏ ସେ ଗଛ ସୁରକ୍ଷା ଦାୟୀତ୍ୱରେ ଥିବା କଥା ଜେଜେଙ୍କ ଠାରୁ ଶୁଣିବା ପରେ ମନ ଭିତରେ ସ୍ୱତଃ ପ୍ରଶ୍ନଟେ ଉଙ୍କି ମାରିଥିଲା : ଈଶ୍ୱରଙ୍କର କ'ଣ ସୁରକ୍ଷା ଦରକାର ହୁଏ ?"

ଜେଜେଙ୍କୁ ସେ ଏ ପ୍ରଶ୍ନ ପଚାରି ନଥିଲା, କାଳେ ସେ ରାଗିବେ ବୋଲି ।

-୨-

ରାତି ପାହି ଆସୁଥିଲା । ଜେଜେବାପା ଶେଯ ଛାଡ଼ି ପ୍ରାତଃ ଭ୍ରମଣରେ ବାହାରି ଯାଇଥିଲେ। ତା'ର ନିଦ ଭାଙ୍ଗିଗଲା । ମନ ଭିତରକୁ ପସି ଆସିଲା ଗତ ସନ୍ଧ୍ୟାରେ ଦେଖିଥିବା ହୁଙ୍କାର ଦୃଶ୍ୟ । ଧୀରେ ଧୀରେ ସେ ଘରୁ ବାହାରିଗଲା ସେଇ ନିର୍ଜନ ହୁଙ୍କା ପାଖକୁ । ନା ଥିଲା ଡ଼ର ନା ଭୟ । ଈଶ୍ୱରଙ୍କୁ ସୁରକ୍ଷା ଦେଉଥିବା କଳାନାଗକୁ କାଳେ ସେ ଭେଟି ପାରେ, ଏଇ ଆଶାରେ ସେ ଡ଼ଗ ଡ଼ଗ ଚାଲୁଥିଲା ।

ନିମ ଗଛ ପାଖରେ ପହଞ୍ଚି ସେ ହୁଙ୍କା ଆଡକୁ ଚାହିଁଲା । ସତକୁ ସତ, ସେ ଦେଖି ପାରୁଥିଲା, ଗୋଟେ କଳା ନାଗ ସାପ ତା' ଆଡକୁ ଫଣା ଟେକି ଚାହିଁଛି ହୁଙ୍କା ଭିତରୁ । ସତ ଦେଖୁଛି କି ନାହିଁ ଭାବି ସେ ତା' ଆଖି ମକଚିଲା ଦୁଇ ପାପୁଲିରେ । ତାକୁ ଲାଗିଲା ହୁଙ୍କା ଭିତରୁ ଆଉ ଗୋଟେ କଳା ନାଗ ସାପ ଫଣା ଟେକି ତା' ଆଡେ ଚାହିଁଛି । ଚାହୁଁ ଚାହୁଁ ଆଉ ଗୋଟେ । ପୁଣି ଗୋଟେ । ଆହୁରୀ ଗୋଟେ । ଧୀରେ ଧୀରେ ସେମାନଙ୍କ ସଂଖ୍ୟା ବଢ଼ି ଚାଲିଛି । ସେ ଗଣିବାକୁ ଚେଷ୍ଟା କରି ବି ପାରିଲାନି ।

ଧୀରେ ଧୀରେ ହୁଙ୍କା ଭିତରୁ ବାହାରି ସେମାନେ ଭୂଇଁ ଉପରକୁ ଆସିଗଲେ ଏବଂ ଗୋଟେ ବଳୟ କରି ଫଣା ଟେକି ତା'ଚାରିପାଖେ ଘୁରିବାକୁ ଲାଗିଲେ । ଆଖି ମୁଜିବା ଛଡା ତାର ଆଉ କୌଣସି ଉପାୟ ନଥିଲା ।

❑❑❑

# ଶାହାରୁଖ୍ ଖାଁ

ସେ ଶାହାରୁଖ୍ ଖାଁଙ୍କର ପ୍ରଶଂସକ ନୁହେଁ, ବରଂ ଭକ୍ତ ଥିଲେ । ଶାହାରୁଖ୍‌ଙ୍କ ଅଭିନୀତ ସବୁ ଚଳଚିତ୍ର ସେ ଦେଖୁଥିଲେ ଘରେ ।

ଶୋଇବା ଘର କାନ୍ଥରେ ଭର୍ତ୍ତି ହେଇଥିଲା ବିଭିନ୍ନ ପୋଜ୍‌ର ଫଟୋ । କେହି କେହି ତାଙ୍କୁ ଶାହାରୁଖ୍‌ଙ୍କ କହିବାର ଢ଼ଙ୍ଗ ଅଥବା ହେୟାର ଷ୍ଟାଇଲ୍‌ରେ ସାମଞ୍ଜସ୍ୟତା ଅଛି ବୋଲି କହିଲେ ସେ 'କୁତ୍‌କୁତ୍' ହେଉଥିଲେ ମନେ ମନେ ।

ତାଙ୍କର ଧାରଣାଥିଲା ଦିନେ ନା ଦିନେ ଶାହାରୁଖ୍ ତାଙ୍କ ପାଖକୁ ଆସିବେ । କାରଣ ନିଜ ଘର ସାମ୍ନାରେ ମନ୍ଦିରଟିଏ କରି ଶାହାରୁଖ୍‌ଙ୍କ ପ୍ରତିମା ପୂଜା କରୁଥିଲେ ସେ ।

ସତକୁ ସତ ଦିନେ ଅନାଚକ ଶାହାରୁଖ୍ ତାଙ୍କ ଘର ବାହାରେ ଆସି କବାଟ ଠକ୍ ଠକ୍ କଲେ ।

ସେ କବାଟ ଖୋଲି ଦେଖିଲେ ଓ ଅଚାନକ ଆନନ୍ଦରେ ଆତ୍ମହରା ହେଇଗଲେ । ଶାହାରୁଖ୍ ଘର ଭିତରକୁ ଆସିଲେ । ସେ ପାଖରେ ବସୁ ବସୁ କହିଲେ: ଏତେ ଗୁଡାଏ ଟଙ୍କା ଖର୍ଚ୍ଚ କରିଦେଲ ମୋ ପାଇଁ, ଏବେ ସେ ସବୁକୁ ଭରଣା କରିବାକୁ ଆସିଛି ମୁଁ, କୁହନ୍ତୁ" କହୁ କହୁ ସେ ନିଜ ପକେଟ୍‌ରୁ ଚେକ୍ ବହି କାଢ଼ିଲେ ।"

ସେ କହିଲେ: ଆପଣଙ୍କର ପାଦ ପଡ଼ିଲା ମୋ ଘରେ, ସେତିକି ଯଥେଷ୍ଟ । ସାରା ଜୀବନ ପାଇଁ ମୁଁ କୃତଜ୍ଞ ।"

ହଠାତ୍ ତାଙ୍କ ନିଦ ଭାଙ୍ଗିଗଲା ଓ ସେ ପ୍ରକୃତିସ୍ଥ ହେଲା ପରେ ଜାଣିଲେ ଯେ ସେଇଟା କେବଳ ସ୍ୱପ୍ନ ହିଁ ଥିଲା ।

ସେ ମନେ ମନେ ଦୁଃଖ କରୁଥିଲେ, ସାରା ଜୀବନର ସଂଚୟକୁ ସେ ନିଜ ଖୁସି ପାଇଁ ବାଜିରେ ଲଗେଇ ଦେଇଛନ୍ତି ।

❑❑❑

# ଅମରତ୍ୱ

ଯେଉଁ ଦିନ ସେ ଏକ ଶହ ପଚାଶ ବର୍ଷ ବୟସରେ ପହଞ୍ଚିଲେ, ତାଙ୍କ ଜନ୍ମୋତ୍ସବ ପାଳନ କରିବା ଲାଗି ସମଗ୍ର ପରିବାର ତତ୍ପର ହୋଇ ପଡ଼ିଲେ । ନିକଟରେ ନିଜର ଶହେ ବର୍ଷ ପୂର୍ତ୍ତି କରିଥିବା ନାତି ତାଙ୍କର ପ୍ରଶ୍ନଟିଏ ପଚାରି ବସିଲା ତା'ର ଅଜାଙ୍କୁ : ଏତେ ଗୁଡାଏ ବର୍ଷ କ'ଣ ଗୁଡାଏ ଲେଖି ଚାଲିଛ ତମେ ? କ'ଣ ପାଇଁ ?

ସାରା ଜୀବନ ସେ ସମୟ ଅପଚୟ ନ କରି କେବଳ ଲେଖିଚାଲିଥିଲେ ଅନେକ ଗଳ୍ପ, ଉପନ୍ୟାସ, କବିତା, ନାଟକ ଇତ୍ୟାଦି ।

: କେବଳ ଅମରତ୍ୱର ନିଶାରେ ବିତିଗଲା ଏତେ ଗୁଡାଏ ବର୍ଷ" ସେ ଉତ୍ତର ଦେଲେ ।

ନାତି ଟୋକା ତାଙ୍କ ଉତ୍ତରରେ କେବଳ ମୁରକି ହସିଲା । କିଛି କହିଲାନି, ମାତ୍ର ତା' ହସରେ ଅର୍ଥ ଥିଲା– ଅମରତ୍ୱ ନିଶାରେ କିଛି ମୂହୁର୍ତ୍ତ ବି ଠିକ୍ ଭାବରେ ବଞ୍ଚି ନ ପାରିଥିବାର ଦୁଃଖରେ ଅଜା ଝାଉଁଳିବା ଆରମ୍ଭ କଲେଣି ।



# କଣା

ଗତ ରାତିରେ ଯାହା ଯାହା ସବୁ ଘଟିଥିଲା-ଚଳଚ୍ଚିତ୍ର ଅଭିନେତ୍ରୀମାନଙ୍କ ସହ ହସଖୁସୀ, ମନ୍ତ୍ରୀଙ୍କ କାନରେ ଫୁସୁର୍ ଫାସର୍ ଏବଂ ପତ୍ନୀଙ୍କ ପାଖରେ ମୃଦୁ ପାନୀୟ ସେବନ- ସକାଳେ ସବୁ ଖବର ସହ ଫଟୋ ବି ଛପିଥିଲା । ଅଧିକାଂଶ ଖବର କାଗଜର ତୃତୀୟ ପୃଷ୍ଠାରେ। ଚା’ ପିଉ ପିଉ ସେ ସବୁ ଫଟୋ ଆଡେ ଥରୁଟିଏ ମୁହଁ ବୁଲେଇ ଦେଲେ ଏବଂ ପତ୍ନୀଙ୍କ ଆଡକୁ ବଢ଼ାଇ ଦେଲେ ଖବର କାଗଜ।

ପ୍ରାୟ ତିରିଶ ବର୍ଷ ତଳେ ମଧ୍ୟ ଭାରତରୁ ସେ ବମ୍ବେ ଆସିଥିଲେ ଜଣେ ହୀରା ବ୍ୟବସାୟୀଙ୍କ ଘରର ଚାକର ହେଇ । ମାତ୍ର ନିଜର କଠିନ ପରିଶ୍ରମ ଓ ଭାଗ୍ୟ ଦେବୀଙ୍କ ପ୍ରସନ୍ନ ଯୋଗୁଁ ଏବେ ଜଣେ କୋଟିପତି। ବଂଗଳା, ଗାଡ଼ି, ଚାକର, ପୂଜାରୀ, ଫ୍ଲାଟ, ବ୍ୟାଙ୍କ ବାଲାନ୍ସ ସବୁ କିଛି ତାଙ୍କ ପାଖରେ ଏବେ ।

ପତ୍ନୀ ସବୁ ଖବର କାଗଜର ତୃତୀୟ ପୃଷ୍ଠା ତନ୍ନ ତନ୍ନ କରି ଦେଖିଲେ ଏବଂ ଦୁଃଖି ହେଇଗଲେ । ବିଷାଦର କାରଣ ଥିଲା ଯେ ତାଙ୍କ ପତିଙ୍କ ସବୁ ଫଟୋରୁ ଜଣା ପଡୁଥାଏ ସେ ଯିମିତି ଜଣେ କଣା ଲୋକ । ସବୁ ଫଟୋରେ ବାମ ଆଖିଟି ମୁଦ୍ରିତ ଅବସ୍ଥାରେ ।

ସେ ଜାଣନ୍ତି ତାଙ୍କ ସ୍ୱାମୀ ଆଦୌ କଣା ନୁହଁନ୍ତି। ତିରିଶି ବର୍ଷ ଧରି ହୀରା କାରଖାନାରେ କାମ କରିବା ଅବସ୍ଥାରେ କ୍ରମାଗତ ହୀରାର ଗୁଣାତ୍ମକମାନ ନିର୍ଦ୍ଧାରଣ କରିବା ଉଦ୍ଦେଶ୍ୟରେ ତାଙ୍କୁ ବାଁ ଆଖି ବନ୍ଦ ରଖି ଡାହାଣ ଆଖିରେ ଲେନ୍ସ ସାହାଯ୍ୟରେ ହୀରା ପଥରକୁ ପରଖିବାକୁ ପଡେ। ଏମିତି ଏକ ଅଭ୍ୟାସରେ ପଡ଼ି ଯାଇଛି ତାଙ୍କର ଯାହା କଣା ହୋଇଯାଇଛି କ୍ୟାମରାର ପେଟ ଭିତରେ । ଅଚାନକ ମନ ଭିତରକୁ ଆସୁଥିବା ଏକ ଅଜବ ଖିଆଲକୁ ମନେ ପକେଇ ସେ କୁତ୍‌କୁତ୍ ହେଲେ ମନେ ମନେ ଯେ ଏତେ ବର୍ଷ ଧରି ଏକ ଆଖି ବନ୍ଦ କରି ସେ ପୃଥିବୀକୁ ଦେଖୁଥିଲେ ବି କୌଣସି ଯୁବତୀ ତାଙ୍କ ବିରୁଦ୍ଧରେ ଅଶ୍ଳୀଳତା ଆରୋପ କରି ନାହିଁ ।



# ବଗିଚା

ଅପରାହ୍ନର ନିର୍ଦ୍ଦିଷ୍ଟ ସମୟରେ ସେ ବାହାରି ଆସନ୍ତି ଘର ସାମ୍ନା ବଗିଚାକୁ, ଯେଉଁଠି ଫୁଟି ଥାଏ ନାନା ରଂଗର ଜାତି ଜାତିକା ଫୁଲ । ବଗିଚା ନୁହେଁ ଫୁଲର ସମୁଦ୍ରଟାଏ । ଠାଏ ଠାଏ ଫୁଲମାନଙ୍କ ପାଖରେ ହରରଂଗୀ ପ୍ରଜାପତିମାନେ ଗପସପ କରିବାରେ ବ୍ୟସ୍ତ । ଫୁଲଗଛ ମୂଳରେ ପାଣି ପାଇପ୍‌ଟାକୁ ଧରିବା ସମୟରେ ତାଙ୍କ ଓଠ ଗୁଣୁ ଗୁଣ ହେବା ଆରମ୍ଭ କରେ ।

ଠିକ୍ ଏତିକିବେଳେ ତାଙ୍କ ଆଢୁଆଳରେ ସାମ୍ନା ରାସ୍ତାରେ ଅଟକେ ଏକ ପୋଲିସ୍ ଭ୍ୟାନ୍ । ସହାସ୍ୟ ଓହ୍ଲାନ୍ତି ପ୍ରଜାପତିଟିଏ । ସନ୍ତର୍ପଣରେ ଘର ଭିତରକୁ ଚାଲି ଯା'ନ୍ତି ସେ । ଫୁଲଟିଏ ଅପେକ୍ଷାରେ ଥାଏ ଅନେକ ଆଗରୁ କୁତ୍‌କୁତ୍ ଆଉ ଚାପା ହସର ଲହଡ଼ି ମାଡ଼ିଯାଏ ବଗିଚା ସାରା ଅନେକ ସମୟ ଯାଏ । ତଥାପି ପାଣି ଦିଆ ଚାଲିଥାଏ । ସେମିତି ଅତର୍କିତ ଫେରିଯାଏ କ୍ଲାନ୍ତ ପ୍ରଜାପତିଟି ।

ବଗିଚାଟି ତାଙ୍କୁ କେବଳ ଚାହିଁଥାଏ ଅପଲକ । ନିର୍ବାକ । ମଝିରେ ଯାହା ଗୋଟେ ଗୀତ କଣ୍ଠ ପାଖକୁ ଆସି ପୁଣି ଫେରି ଯାଉଥାଏ ।

❑❑❑

# କୋଠରୀ ନଂ ୩୦୨

ସବୁଥର ପରି ହୋଟେଲ୍ ମ୍ୟାନେଜର୍ ଏଥର ମୋତେ ନମସ୍କାର କଲାନି ଅଥବା ରେଜିଷ୍ଟରରେ ଥିବା ନାଁ, ଗାଁ, ଠିକଣା ଲେଖିବା ସହ ଆସିବାର ସଂପର୍କରେ ଉଲ୍ଲେଖ କରିବା ତ ଦୂରର କଥା, ଦସ୍ତଖତ ପାଇଁ ବି ଅନୁରୋଧ କଲାନି । ସାମ୍ନାରେ ମୁଁ ଆଟାଚି ରଖିବା ଆଗରୁ ସେ ମୋ ହାତକୁ ବଢ଼ାଇ ଦେଲା ରୁମ୍ ନମ୍ବର ୩୦୨ର ଚାବିକାଠି ଏବଂ ମୋ ଆଟାଚି ନେଇ ଯିବା ଲାଗି ପାଖରେ ଠିଆ ହେଇଥିବା ବୟଟିକୁ ଆଖିରେ ଇସାରା କଲା ।

ଯନ୍ତ୍ରବତ୍ ପିଲାଟି ତତ୍‌କ୍ଷଣାତ୍ ମୋ ଆଟାଚି ଧରି ଲିଫ୍‌ଟର ସୁଇଚ୍ ଟିପିଲା। ମୁଁ ତାକୁ ଅନୁସରଣ କଲି। ତୃତୀୟ ମହଲାରେ ଲିଫ୍‌ଟ ରହିଲା । କରିଡରରେ ଦୁହେଁ ଚାଲୁ ଚାଲୁ ବୟଟି ପଚାରିଲା ।

: କାଲି ସନ୍ଧ୍ୟାରେ ଆପଣ ମଲାପରେ, ପୁଲିସ୍ ରୁମ୍ ନମ୍ବର ୩୦୨କୁ ସିଲ୍ କରି ଦେଇଛି । ଆତ୍ମହତ୍ୟା ବୋଲି ସନ୍ଦେହ କରୁଛି ।

: ମର୍ଡର ବି ହୋଇପାରେ! ମୁଁ କହିଲି ।

: ନା, ସବୁ କଥା ବେଡ୍ ଉପରେ ପଡ଼ିଥିବା ଡାଏରୀରୁ ଜଣା ପଡିଛି । ଆପଣ ତ ନିଜେ ଗୁଳି ଟିପି ଥିଲେ କାନମୁଣ୍ଡା ଉପରେ ।"

ପଛକୁ ଫେରି ଚାହିଁଲି । ସେଠି ନା ଥିଲା ବୟ, ନା ମୋ ଆଟାଚି । ସାମ୍ନାରେ ବି ଦେଖା ଯାଉ ନଥିଲା କୋଠରୀ ନଂ ୩୦୨ ।



# ପଦଯାତ୍ରା

ଗାନ୍ଧୀ ଜୟନ୍ତୀ ଅବସରରେ ସହରର ରାଜରାସ୍ତାରେ ସମୂହ ପଦଯାତ୍ରାର ପରିକଳ୍ପନା କରିଥିଲେ ସେ । ବିସ୍ତୃତ ବିବରଣୀ ସବୁ ସଂବାଦ ଓ ବିଜ୍ଞାପନ ଭାବେ ପ୍ରକାଶିତ ହୋଇଥିଲା ତାଙ୍କର କାଗଜମାନଙ୍କରେ ।

ନିର୍ଦ୍ଧାରିତ ଦିବସରେ ପ୍ରତ୍ୟୁଷରେ ହଜାର ହଜାର ଜନତା ରୁଣ୍ଡ ହେଇଥିଲେ ସହରର ପ୍ରଶସ୍ତ ମଇଦାନରେ ଓ ଅପେକ୍ଷା କରିଥିଲେ ତାଙ୍କ ଆଗମନକୁ ବହୁ ସମୟ ଯାଏ । ମାଇକ୍‌ରୁ ଭାସି ଆସୁଥିଲା ଗାନ୍ଧୀଜୀଙ୍କ ପ୍ରିୟ ସଂଗୀତ 'ରଘୁପତି ରାଘବ ରାଜାରାମ' ଆଉ 'ବୈଷ୍ଣବ ଜନୋତୋ..' କିନ୍ତୁ ସେ ନଥିଲେ ପଦଯାତ୍ରାକୁ ଆଗକୁ ବଢ଼ାଇ ନେବା ଲାଗି ।

ସେ ଦିନ ମଧ୍ୟାହ୍ନରେ ଖବର ପ୍ରସାରିତ ହୋଇଥିଲା ଗଣମାଧ୍ୟମରେ ଯେ ଗଭୀର ଆଣ୍ଠୁବାତରେ ଆକ୍ରାନ୍ତ ହୋଇ ସେ ଭର୍ତ୍ତି ହୋଇଛନ୍ତି ସହରର ନାମୀ ହାସ୍‌ପାତାଳରେ । ତାଙ୍କ ଆରୋଗ୍ୟ କାମନା କରି ସନ୍ଧ୍ୟାରେ ରଖା ଯାଇଛି ଏକ ପ୍ରାର୍ଥନା ସଭା ସହରର ସଭାଗୃହରେ ।



# ଆଲବମ୍

ଯେଉଁଠି କିଛି ଘଟଣା କିମ୍ବା ଦୁର୍ଘଟଣା ଘଟିବ ସେଠି ନିଶ୍ଚୟ ଥିବେ ସେ। ହେଇପାରେ ମାଗଣା ଚକ୍ଷୁ ଚିକିତ୍ସା ଶିବିର ଉଦ୍‌ଘାଟନ ଉତ୍ସବ, ମନ୍ତ୍ରୀଙ୍କ ଜିଲ୍ଲା ବିକାଶ ଯୋଜନାର ରିଭ୍ୟୁ ଅଥବା ସଡକ ଦୁର୍ଘଟଣା ଜନିତ ରାସ୍ତାରୋକ ଆନ୍ଦୋଳନ। ସବୁଠି ସେ ଥାନ୍ତି । ସବୁ ଘଟଣା/ଦୁର୍ଘଟଣାର ଫଟୋ ତାଙ୍କ ପାଖରେ ମହଜୁଦ୍ ଅଛି ଥାକ ମରା ହେଇଥିବା ଆଲ୍‌ବମ୍‌ମାନଙ୍କରେ ।

ତାଙ୍କ ଫଟୋ ତାଙ୍କ ଜୀବନୀ ବୋଲି ସେ ଗର୍ବ କରନ୍ତି । ଘରକୁ ଆସୁଥିବା ଅଭ୍ୟାଗତଙ୍କୁ ତାଙ୍କ ଫଟୋ ସହ ଜଡିତ ଘଟଣା ପ୍ରମୁଖ ସର୍ବାଗ୍ରେ ଅବତାରଣା କରନ୍ତି ।

ଅସଲରେ ସେ ଫଟୋରେ ରହିବା ଲାଗି ଅପ୍ରାଣ ଉଦ୍ୟମ କରୁଥାନ୍ତି । ଘଟଣା ସହ ତାଙ୍କର ସଂପୃକ୍ତି ଥାଏ କମ୍ ଅଥବା ଆଦୌ ନଥାଏ ।

ଏକଥା ତାଙ୍କ ସ୍ତ୍ରୀଙ୍କୁ ଜଣାଥାଏ । ସ୍ୱାମୀଙ୍କ ଅପାରଗ ପଣିଆର ସେ ଏକ ମୂକ ସାକ୍ଷୀ। ଯେତେବେଳେ ସେ ଆଗନ୍ତୁକମାନଙ୍କୁ ତାଙ୍କ ଡ୍ରଇଁରୁମ୍‌ରେ ଆଲ୍‌ବମ୍ ଦେଖାଇ ନିଜ ପାରିବା ପଣିଆର ଦଲିଲ୍ ପେଶ୍ କରୁଥାନ୍ତି, ପରଦା ଅଢୁଆଳରେ ଥାଇ ପତ୍ନୀ ମୁର୍‌କି ହସୁଥାନ୍ତି । ସେ ହସ ତାଙ୍କ ଶିରା ପ୍ରଶିରାରେ ବିଷପରି ଚରିଯାଏ ।

❑❑❑

# ସେ ସହର କଥା

ସହରସାରା ଜାତି ଜାତିକା ଦେଶୀ ବିଦେଶୀ କାର୍‌ରେ ଘୁରୁଥିବା ଏବଂ ନାନା କିସମର ସୁରମ୍ୟ ଅଟ୍ଟାଳିକାରେ ରହୁଥିବା ଲୋକଗୁଡାକ ଥିଲେ ଦାରିଦ୍ର୍ୟ-ପ୍ରପୀଡିତ । ପ୍ରଚଣ୍ଡ ଖରାରେ ବୁଲି ବୁଲି ଲୋକଟି ଯେପରି ପାଣି ବୁନ୍ଦାଏ ପାଇଁ ତହଳ ବିକଳ ହେଉଥାଏ, ସେ ଲୋକ ଗୁଡାକ ସେଇପରି ତୃଷାର୍ତ୍ତ ଥାଆନ୍ତି ଅର୍ଥ ଓ କ୍ଷମତା ପାଇଁ । ଶୋଷିଲା ଲୋକଟି ପାଣି ପିଇବା ପରେ ତାର ଶୋଷ ମେଣ୍ଟିଯାଏ, ମାତ୍ର କ୍ଷମତା ଓ ଅର୍ଥ ନାମକ ବ୍ୟାଧିରୁ ମୁକ୍ତି ପାଇବା ପାଇଁ କୌଣସି ଔଷଧ ଉଦ୍‌ଭାବନ ହୋଇ ନାହିଁ ଏ ଯାବତ୍ ।

ସେ ସହରର ଲୋକେ ନିଦ ପାଇଁ ଔଷଧ ଖାଆନ୍ତି । ଭଲ ପାଣି କି ପବନ ଦୁର୍ଲଭ । ଚୋର, ଡକାୟତ ଏବଂ ପାଜିଙ୍କର ଖୁବ୍ ଭିଡ ।

କେବଳ ଏତିକି ଆଶ୍ଚର୍ଯ୍ୟର କଥା ଯେ ସେ ଏ ସହରକୁ ଯେବେ ଆସିଥିଲେ ସେତେବେଳେ କେହି ଜାଣି ନଥିଲେ ଏବଂ ଯେତେବେଳେ ସେ ଏ ସହରରୁ ଚାଲିଗଲେ କେହି ବି ଜାଣିପାରିଲେ ନି । ତାଙ୍କର ଧାରଣା ହୁଏ ଯେ ସେ ନିଜେ ହିଁ ନ ଥିଲେ ଆଦୌ ।



# ଭିକାରୁଣୀ ଓ ସେକ୍ସ

ଟ୍ରେନ୍‌ର ଗତି ଖୁବ୍ ଧୀମା ଥିଲା । ସ୍ଲିପର କୋଚର ହାଉଯାଉ ସାଙ୍ଗକୁ ମେ'ମାସର ପ୍ରଚଣ୍ଡ ଖରାରେ ବାଇଗଣ ପରି ସିଝି ଯାଉଥିଲା ଚମଡା । ଏପରି ଏକ ଅଶ୍ୱସ୍ତିକର ପରିବେଶକୁ ଆହୁରି ବିରକ୍ତିକର ଏବଂ ପୀଡ଼ା ଦାୟକ କରିବା ଲାଗି କମ୍ପାର୍ଟମେଣ୍ଟରେ ପସି ଯାଇଥିଲା ମଧ୍ୟବୟସ୍କା ଭିକାରୁଣୀଟି । ସାଙ୍ଗରେ ପାଞ୍ଚ ସାତ ବର୍ଷର ପିଲାଟିଏ ।

ମୁଁ ବସିଥିବା ସିଟ୍ ପାଖରେ ପହଂଚି ଭିକାରୁଣୀଟି ହାତ ବଢ଼େଇ ଦେଲା ସାମ୍ନାରେ ବସିଥିବା ଯାତ୍ରୀମାନଙ୍କ ଆଡକୁ ।

ମୋ ପାଖ ସିଟ୍‌ରେ ଦୁଇ ଜଣ ଓ ସାମ୍ନାରେ ତିନିଜଣ ଯାତ୍ରୀ ବସିଥିଲେ । ବସିଥିଲେ କହିବା ଠିକ୍ ହବ ନାହିଁ । ଶୋଇଥିଲେ ବୋଲି ବି କହିବା ଠିକ୍ ହେବନି। ପାଖକୁ ଲାଗି ବସିଥିବା ବୟସ୍କ ସର୍ଦ୍ଦାରଜୀ କାହା ସହ ଖୁବ୍ ଗରମ ହେଇ ମୋବାଇଲ୍‌ରେ କଥା ହେଉଥାନ୍ତି । ତାଙ୍କ ଭାଷାରେ ବିନ୍ଦୁ ବିସର୍ଗ ବୁଝିବା କଷ୍ଟକର ବ୍ୟାପାର ମୋ ପାଇଁ । କେବଳ ଗୋଟିଏ ଶବ୍ଦ 'ବହେଣଦି' ବାରମ୍ବାର କାନରେ ପଡୁଥାଏ । ଜଣେ ପଞ୍ଜାବୀ ଭଦ୍ରଲୋକ ଏଇ ଶବ୍ଦ ସହ ପରିଚିତ କରାଇ ଥିଲେ ପ୍ରାୟ କୋଡ଼ିଏ ବର୍ଷତଳେ ତାଙ୍କ ସହ ସାଙ୍ଗ ହେଇ ଚାକିରୀ କରୁଥିବା ବେଳେ। ଅବଶ୍ୟ ଲୋକପ୍ରିୟ ଗାୟକ ଜଗଜିତ ସିଂଙ୍କ ଗୀତରୁ କେବେ କେବେ କିଛି ପଞ୍ଜାବୀ ଶବ୍ଦ ସହ ପରିଚିତ ଥିଲି ମାତ୍ର ଏବେ ସେ ସବୁ ବିସ୍ମୃତ ପ୍ରାୟ ।

ପାଖ ସିଟ୍‌ର ପଞ୍ଜାବୀ ଭଦ୍ରଲୋକଙ୍କର ନିଘା ଆଦୌ ନଥାଏ ଯେ ତାଙ୍କ ଆଡକୁ ଭିକାରୁଣୀଟି ହାତ ବଢ଼େଇଛି। ପଞ୍ଜାବୀ ଭଦ୍ରବ୍ୟକ୍ତିଙ୍କ ପାଖକୁ ଲାଗି ବସିଥିବା ତରୁଣୀଟି ଫିଲ୍ମ ଫେୟାର ଅଥବା ଚଳଚ୍ଚିତ୍ର ସମ୍ବନ୍ଧୀୟ ପତ୍ରିକାଟି ଭିତରେ ମୁହଁ ଗୁଞ୍ଜି ଦେଇଥାନ୍ତି । ତାଙ୍କ ପରିଧାନରୁ ସେ କେବଳ ଶିକ୍ଷିତା ନୁହଁନ୍ତି ଆଧୁନିକା ପରି ମନେ ହେଉଥା'ନ୍ତି । ବ୍ଲୁ-ଜିନ୍ ପ୍ୟାଣ୍ଟ ସାଙ୍ଗକୁ ଚିପା ଗଞ୍ଜି ଭିତରୁ ସୁଠାମ ଶରୀରର ରେଖାମାନ ବାରି ହେଇ ପଡୁଥା'ନ୍ତି । ସେ ହଠାତ୍ ଉପରକୁ ମୁହଁ ଟେକି ଭିକାରୁଣୀ ଆଡକୁ ଥରେ ନିଷ୍କରୁଣ ଆଖିରେ ଚାହିଁଲେ ଓ ବିନା ପ୍ରତିକ୍ରିୟାରେ ପୁଣି ପତ୍ରିକା ଭିତରେ ମୁଣ୍ଡ ଭର୍ତ୍ତି

କରିଦେଲେ । ସେତିକି ବେଳେ ମନେ ହେଲା ବକ୍ଷୋଜ ଦୁଇଟି ତାଙ୍କର ଦୁଇଟି ଛଟପଟ ହେଉଥିବା କପୋତ ଚଢ଼େଇ ଏବଂ ଉର୍ଦ୍ଧ୍ୱଉଡ଼ାଣ ଦେବାକୁ ସେମାନେ ବ୍ୟସ୍ତ ଓ ବ୍ୟଗ୍ର ।

ତରୁଣୀଟିର ଠିକ୍ ସାମ୍ନାରେ ଘୁମାଉ ଥା'ନ୍ତି ଜଣେ ମଧ୍ୟବୟସ୍କା ଭଦ୍ର ମହିଳା ସ୍ୱାମୀଙ୍କ ସହ ଆଗରୁ ଆଣିଥିବା ରୁଟି ଆଉ ଆଚାର ଖାଇବା ପରେ । ପାଖରେ ସ୍ୱାମୀ, ଲଣ୍ଡା ହେଇଥିବା ମୁଣ୍ଡଟି ଗୋଟେ ତରଭୁଜର ଭ୍ରମ ସୃଷ୍ଟି କରୁଥାଏ ନତୁବା ବାସ୍କେଟ୍‌ବଲ୍ । ଭଦ୍ର ମହିଳାଙ୍କ ପେଟର ଚର୍ବି ବାହାରକୁ ଚାଲି ଆସିଥାଏ ପିନ୍ଧିଥିବା ଶାଢ଼ୀର ବୋଲ ନ ମାନି ।

ସେମାନେ ଫେରୁଥିଲେ ଆହ୍ଲାବାଦରୁ । ସ୍ୱାମୀଙ୍କ ସ୍ୱର୍ଗତ ପିତାଙ୍କ ଅସ୍ଥି ବିସର୍ଜନ କରିବାକୁ ଯାଇଥିଲେ । ତ୍ରିବେଣୀ ସଂଗମ ଠାରେ । ସାଥିରେ ଆଣିଥାନ୍ତି ଗଙ୍ଗାଜଳ ପ୍ଲାଷ୍ଟିକ୍ ଜାରକିନ୍‌ରେ ।

ତ୍ରିବେଣୀ ସଂଗମରେ ପଣ୍ଡାମାନଙ୍କ ଦ୍ୱାରା ନିର୍ଯ୍ୟାତିତା ହେଇ ଥିବାର ସମସ୍ତ ବିବରଣୀ ସହଯାତ୍ରୀମାନଙ୍କୁ ପେଶ୍ କରିବା ପରେ ଭଦ୍ରଲୋକ ଶେଷରେ କହିବାକୁ ପଛାଇ ନ ଥିଲେ ଏଇ କିଛି ସମୟ ଆଗରୁ : ମୁଁ ତ ମୋ ପୁଅକୁ କହିବି, ବାବୁରେ,ମୋର ସ୍ୱର୍ଗ ଯିବା ଦରକାର ନାହିଁ, ତୁ ମୋ ଅସ୍ଥି ଆମ ବାଡ଼ିପଟ ଗଡ଼ିଆରେ ବସର୍ଜନ କରିବୁ ।" ହସୁ ହସୁ ଭଦ୍ରବ୍ୟକ୍ତି ଗମ୍ଭୀର ହେଇ ଯାଇଥିଲେ ଯେ ସେତେବେଳଠୁଁ ତାଙ୍କ ବକର ବକର ଏକଦମ୍ ଠପ୍ ହେଇ ଯାଇଛି । ସ୍ତ୍ରୀ ରହିରହି ତାଙ୍କ କାନ୍ଧରେ ଟଳି ପଡୁଛନ୍ତି ନିଦ ବାଉଳାରେ ।

ଭିକାରୁଣୀ ହାତ ବଢ଼େଇ ରଖିଛି ସିମିତି, ଯିମିତି ଜଗନ୍ନାଥଙ୍କ ହାତ ଭୂଇଁ ସହ ସମାନ୍ତରାଳ ହେଇ ରହିଯାଇଥାଏ ।

ଏବେ ମୋ ସାମ୍ନାରେ ବସିଥିବା ବୁଢ଼ା ଲୋକଟି ଆଡ଼କୁ ଭିକାରୁଣୀର ହାତ ବଙ୍କେଇ ହେଇ ଯାଇଛି ଯିମିତି ଅକ୍ଷାଂଶ ଦ୍ରାଘିମା ସୂଚିତ କରିବା ଲାଗି କମ୍ପାସ୍‌ର କଣ୍ଟା ଘୂରି ଯାଇ ସ୍ଥିର ହେଇଯାଏ ।

ବୁଢ଼ା ଲୋକଟି ହିଁ ପ୍ରଥମେ ଭିକାରୁଣୀକୁ ବଲ ବଲ ହେଇ ଚାହିଁଲା । ଭିକାରୁଣୀର ଅନୁଜ୍ଜ୍ୱଳ ଆଖି ସହ ବୁଢ଼ାଲୋକଟିର ଚୂଡିଦାର ସାଙ୍ଗକୁ ନେହେରୁ ଜ୍ୟାକେଟ୍

ପିନ୍ଧାରୁ ମନେ ହେଉଥାଏ ସେ ଜଣେ ରାଜନୈତିକ କର୍ମୀ ଅଥବା ନେତା । କୋଉ ପାର୍ଟିର କହିବା ମୁସ୍କିଲ୍ । କାରଣ ଏ ଯାବତ୍ ତାଙ୍କ ପାଟିରୁ ଶବ୍ଦଟିଏ ବି ବାହାରି ନାହିଁ ।

: କାମ କରୁନୁ ? ଭଲ ଲାଗୁଚି ଏ ଧନ୍ଦା ? ଯଦି କାମ ପାଉନୁ, ଆ ମୋ ସାଙ୍ଗରେ କାମ ଦେବି ।"

ବୁଢ଼ା ଲୋକଟିର ଉପଦେଶ ଶୁଣି ନ ଶୁଣିଲା ଭଳି ହେଉଥିଲା ଭିକାରୁଣୀ । ଏ କଥା କହି ସାରି ମୋ ଆଡ଼କୁ କଟମଟ ହେଇ ଚାହିଁଥାଏ ବୁଢ଼ାଲୋକଟି । ମୁଁ କୌଣସି ଉତ୍ତର ଦେଲିନି। ଗରମରେ ଭିଜି ଗଲାଣି ଭିତରର ଗଞ୍ଜି ଆଉ ଚଡ଼ି । ଅବହେଳାରେ ରହା ଧରିଥିବା ଭୋକିଲା ଶିଶୁ ପରି କେଁ କେଁ ଶବ୍ଦ କରି ଚାଲିଛି ଛାତ ଉପରୁ ଝୁଲୁଥିବା ଫ୍ୟାନ୍ ।

ଭିକାରୁଣୀ ବୁଢ଼ାଲୋକଟିକୁ ଥରେ ଚାହିଁ ଦେଲା ଏବଂ ପିଲାଟି ସହ ଆଗକୁ ଚାଲିଲା । ହାତ ସେମିତି ବଢ଼େଇ ଥାଏ ଆଗକୁ ।

❑❑❑

# ଗୁଳି

ହାଇସ୍କୁଲରେ ଦୁହେଁ ଥିଲେ ସହପାଠୀ ଓ ଉତ୍ତମ ବନ୍ଧୁ । କାରଣ ଦୁହେଁ ଖେଳକୁଦରେ ଥିଲେ ପାରଙ୍ଗମ, ବିଶେଷ କରି ଦୌଡ ପ୍ରତିଯୋଗିତାରେ ଦୁହେଁ ରହୁଥିଲେ କେବେ ଏକ ଆଉ କେବେ ଦୁଇ ନମ୍ବରରେ ।

କାଳକ୍ରମେ ଶିକ୍ଷା ସମାପ୍ତ ପରେ ଜଣେ ହେଲା ପୋଲିସ୍ ଆଉ ଜଣକ ପାଲଟିଗଲା ଚୋର ଏବଂ ଚୋରି କରି ଚାଲିଲା ପୋଲିସ୍ ସାଙ୍ଗର ଇଲାକାରେ। ଖବର କାଗଜରେ ପ୍ରତିଦିନ ଛପା ହେଲା ପୋଲିସ୍‌ର ଅପରଗତାର କିଛି ସତ ଓ କିଛି ମିଛ କାହାଣୀ।

ଦିନେ ଅଚାନକ ପୋଲିସ୍ ସାଙ୍ଗ ହାବୁଡ଼ରେ ପଡ଼ିଗଲା ଚୋର ସାଙ୍ଗ । ଚୋର ତାକୁ ଦେଖି ଦୌଡ଼ିଲା । ପୋଲିସ୍ ତା ପଛେ ପଛେ ଦୌଡ଼ିଲା ସହରର ମୁଖ୍ୟ ରାସ୍ତାରେ । ଲାଗୁଥିଲା ଯିମିତି ଗୋଟେ ଦୌଡ଼ ପ୍ରତିଯୋଗିତା ଆରମ୍ଭ ହେଇ ଯାଇଛି ।

ୟା ଭିତରେ ପୋଲିସ୍ ସାଙ୍ଗର ଚର୍ବି ବଢ଼ି ଯାଇଥିଲା, ମାତ୍ର ହାରିଯିବା ଭୟରେ ସେ ଦୌଡ଼ୁ ଦୌଡ଼ୁ ବାହାର କଲା ରିଭଲଭର୍ ଏବଂ ଉଚ୍ଚ ସ୍ୱରରେ ପାଟି କରି ଚୋର ସାଙ୍ଗକୁ ଶୁଣେଇଲା : ଫାୟାର୍ ।"

ହରିଣଠୁ ଆହୁରି ତୀବ୍ର ବେଗରେ ଦୌଡ଼ୁଥିବା ଚୋର ସାଙ୍ଗ ଠକ୍ କିନା ଠିଆ ହେଇଗଲା। ଉପରକୁ ଦୁଇହାତ ଟେକି ଦେଇ ଆତ୍ମସମର୍ପଣ କଲା ।

ପରଦିନ ଖବରକାଗଜରେ ପୋଲିସ୍ ସାଙ୍ଗର କରାମତି ସର୍ବଶେଷ ଫଟୋ ସହ ପ୍ରକାଶିତ ହେଲା ସହରର ସବୁ ଖବର କାଗଜରେ ।

ଘରେ ବସି ସକାଳୁ ସକାଳୁ ପୋଲିସ୍ ସାଙ୍ଗ ଚା ସହ ଖବର କାଗଜ ଓଲଟାଇ ପଢ଼ିଲା ବେଳେ ଧୀର ସ୍ୱରରେ କହିଲା : ଏ ସବୁ ଗୁଳିର କରାମତି । 'ଫାୟାରିଙ୍ଗ୍‌ର ଡର ନଥିଲେ ଏ ସଫଳତା ମିଳିଥାନ୍ତା କୁଆଡୁ ?"

ପାଖରେ ବସି ଖବର କାଗଜରୁ ଫଟୋ ଦେଖୁଥିବା ବଢ଼ିଲା ଝିଅ କହିଲା : ବାପା, କାଲି ତୁମ ରିଭଲଭର୍‌ରୁ ମୁଁ ଗୁଳି କାଢ଼ି ଡ୍ରୟର୍ ଭିତରେ ରଖି ଦେଇଥିଲି। ତୁମେ 'ଫାୟାର୍' କହିଲା ବେଳେ ରିଭଲବଲ୍‌ରେ ଗୁଳି ନଥିଲା ।"

ଝିଅ କଥା ଶୁଣି ପୋଲିସ୍ ସାଙ୍ଗ ତତ୍‌କ୍ଷଣାତ ମୂର୍ଚ୍ଛା ହେଇଗଲେ ।



# ବିତର୍କ

ସାମାଜିକ ସ୍ତରରେ ଦୁହିଁଙ୍କ ସଂପର୍କ ଥିଲା ଶ୍ୱଶୁର ଓ ଜ୍ୱାଇଁ। ମାତ୍ର ମାନସିକ ଚେତନାରେ ଦୁହେଁ ଥିଲେ ପରମ ବନ୍ଧୁ । ବୟସ ଦୃଷ୍ଟିରୁ ଜଣେ ବୃଦ୍ଧ, ଆର ଜଣକ ଯୁବକ।

ସେମାନଙ୍କର ପ୍ରଥମ ଭେଟ ହେଇଥିଲା ତିରିଶ ବର୍ଷ ତଳେ ଗୋଟିଏ ସାମାଜିକ ଉତ୍ସବରେ । ଦୁହେଁ ବସିଥିଲେ ହୁଇସ୍କି ଗ୍ଲାସ୍ ଧରି ଗୋଟିଏ ଟେବୁଲ୍‌ରେ ସାମ୍ନା ସାମ୍ନି, ବୃଦ୍ଧ କହିଲେ, କେତେ ପେଗ୍ ହେଲା ? ଯୁବକ ହସି ହସି ଉତ୍ତର ଦେଲେ, ମୁଁ ଚକୁଳି ଖାଏ, କଣା ଗଣିବା ମୋର ଅଭ୍ୟାସ ନୁହେଁ ।”

ଯୁବକଙ୍କ ଉତ୍ତର ବୃଦ୍ଧଙ୍କ ମନକୁ ପାଇଲା । ମଦ୍ୟପାନର ଏକ ଅଲିଖିତ ପ୍ରତିଯୋଗିତାରେ ଦୁହେଁ ଭାଗ ନେଇ ସାରିଥିଲେ ସେତେବେଳକୁ । ମାପି ନଥିଲେ ରାତିର ଗଭୀରତା, ଅବଶ୍ୟ ପ୍ରଥମ ଥର ପାଇଁ ହାର୍ ମାନିଥିଲେ ବୃଦ୍ଧ । କର ମର୍ଦ୍ଦନ କରୁ କରୁ କହିଥିଲେ-ବ୍ରାଭୋ, ବ୍ରାଭୋ ୟଙ୍ଗ ମ୍ୟାନ୍ ।

: ମୁଁ ବାଜିରେ ହାରି ଯାଇଛି। କ’ଣ ମାଗୁଛ ମାଗ, ମୁଁ ଦବାକୁ ତୟାର୍ ଅଛି ।” ବୃଦ୍ଧଙ୍କ ସ୍ୱରରେ ଦାମ୍ଭୀକତା ।

: ମୁଁ ଆପଣଙ୍କ ଝିଅକୁ ବାହା ହେବାକୁ ଚାହେଁ, ଦେଇ ପାରିବେ ?” ଯୁବକ ପ୍ରଶ୍ନ କଲେ । ବୃଦ୍ଧଙ୍କ ନିଶା ତଳକୁ ଖସିଗଲା ଥର୍ମୋମିଟରର ପାରଦ ଥଣ୍ଡା ପାଣିର ସ୍ପର୍ଶରେ ଆସିବା ପରି ।

: ସାନ ଝିଅକୁ ଦେଇପାରେ । ବଡ ଝିଅର ନିର୍ବନ୍ଧ ହେଇ ସାରିଛି ।

ତାହା ହିଁ ହେଲା । ଯୁବକ ଥିଲେ ଜଣେ ଉତ୍ତମ ତଥା ସଂବେଦନଶୀଳ ଲେଖକ । ବୃଦ୍ଧ ଥିଲେ ଗୋଟିଏ ଖବରକାଗଜର ମାଲିକ, ବୁଦ୍ଧିଜିବୀ ଓ ଚିନ୍ତା ନାୟକ ।

କାଳକ୍ରମେ ଯୁବକଙ୍କର ଖ୍ୟାତି ବଢ଼ି ଚାଲିଲା। ଜଣେ ବିଶିଷ୍ଟ ଲେଖକ ଭାବେ ତାଙ୍କୁ ମିଳିଥିଲା ସାମାଜିକ ସ୍ୱୀକୃତି ଓ ପୁରସ୍କାର । ତାଙ୍କର ପ୍ରତିଟି ଗଳ୍ପ ପାଠକର ଚିନ୍ତା ଓ ଚେତନାକୁ ଚହଲାଉ ଥିଲା ।

ଏକଦା ପତ୍ରିକାଟିରେ ପ୍ରକାଶିତ ହେଇଥିବା ତାଙ୍କ ଗଳ୍ପ ଉପରେ ଟିପ୍ପଣୀ ଦେଇ

ପରବର୍ତ୍ତୀ ସଂଖ୍ୟାରେ ଅନେକ ଗୁଡ଼ିଏ ଚିଠି ପ୍ରକାଶ ପାଇଲା, କିଛି ପ୍ରଶଂସା ଓ କିଛି ସମାଲୋଚନା ଥିଲା । ସେଥିରେ ସରଗରମ ଥିଲା ପାଠକ ମହଲ । ଯୁବକ ବିଚଳିତ ଥିଲେ ଏବଂ ଖୁସି ବି ହେଉଥିଲେ। ପାଠକୀୟ ପ୍ରତିକ୍ରିୟା ଯୋଗୁଁ । ମାତ୍ର ତାଙ୍କ ମନ ଫିକା ପଡ଼ିଗଲା ଯେଉଁଦିନ ନିଭୃତରେ ତାଙ୍କ ଶ୍ୱଶୁରଙ୍କ ସହାୟକ ସୂଚନା ଦେଲେ ଯେ ଏ ସବୁ ଚିଠି ଲେଖା ପଛରେ ବୃଦ୍ଧଙ୍କର ପ୍ରଚ୍ଛନ୍ନ ହାତ ରହିଛି କେବଳ ବିତର୍କ ସୃଷ୍ଟି ପାଇଁ ।



# ଛୋଟ ଲୋକ

ମୁଁ ଗୋଟେ ଛୋଟ ଲୋକ । ସିମେଣ୍ଟ, ବାଲି ନଗେଇ କରଣୀରେ ପଲସ୍ତରା କରିବା ମୋର କାମ । ଇଟା ଉପରେ ଇଟା ଥୋଇ ଓଳମରେ ଦେଖିବା ମୋର ବେଉସା । ଏମିତି ବିତିଗଲାଣି ୧୫ କି ୨୦ ବରଷ ଏ କାରଖାନାରେ। ମୋ କାମରେ ମୋ ଉପରେ ହାକିମ୍ ସନ୍ତୁଷ୍ଟ। ମୁଁ ବି ଖୁସି ସେଇଥି ପାଇଁ। ହେଲେ ଏବେ ମୁଁ ପଡ଼ିଛି ହରଡ଼ ଘଣାରେ ଯେବେଠୁଁ ନୂଆ ବଡ଼ ଅଧିକାରୀ ଜଣକ ଆସି କଲୋନୀରେ ସବୁଠୁ ବଡ ଘରେ ରହିଲେଣି । ତାଙ୍କ ଘର ପାଖରେ ବି ଅବିକଳ ସେମିତିଆ ଘରେ ରହୁଛନ୍ତି ଆଉ ଜଣେ ପ୍ରମୁଖ ବଡ ଅଧିକାରୀ ଅନେକ ଆଗରୁ । ଏବେ ନୂଆ ଆଉ ପୁରୁଣାଙ୍କ ଭିତରେ ବାଦୀପାଲା ଚାଲିଛି । ନୂଆ ବାବୁଙ୍କ ଘରେ ମୁଁ ଯଦି ଇଟାଟେ ରଖିଲିଣି,ପୁରୁଣା ବାଲା ଅର୍ଡର ଦେଲେଣି ତାଙ୍କ ଘରେ ଦୁଇଟା ରଖିବାକୁ । ଦିଓ୍ୱାଲି ବେଳକୁ ପୁରୁଣା କହିଲାଣି ମୋ ଘରେ ଶୁଆ ପକ୍ଷିଆ ରଙ୍ଗ ଲାଗିବ। ନୂଆ କହିଲାଣି ପିଙ୍କ୍ କଲର କରିବାକୁ। ଦୁହେଁ ଏତେ ପାଖରେ ଅଥଚ ମାନସିକ ସ୍ତରରେ ପରସ୍ପରଠୁଁ ଅନେକ ଅନେକ ଦୂରରେ । ଜଣେ ଆର ଜଣଙ୍କୁ ନ ସହି ପାରିବା ଅନେକ ଉଦାହରଣର ମୂକସାକ୍ଷୀ ମୁଁ। ଛୋଟ ଲୋକ ଆଜନ୍ମରୁ। ନା ଅଛି ପଇସା, ଗାଡ଼ି ନା ବଂଗଳା। ହେଲେ ଗାଡ଼ି ବଂଗଳା ଆଉ କ୍ଷମତା ଥିବା ଲୋକ ଗୁଡାକ ମୋ ଠୁଁ ବି ଅଧିକ ଛୋଟଲୋକ ।



# ପୋଷ୍ଟକାର୍ଡ

ଦିନ ସାରା ଘୂରି ଘୂରି ସେ କ୍ଳାନ୍ତ ହେଇ ପଡ଼ିଥିଲେ ।

ଦିନ ଦଶଟାରୁ ଘରୁ ବାହାରି ଗଲେ ସେ ଯେ ରାତି ବାରଟା ହେଲାଣି। ଫେରିବାଲେକୁ ସହରର ତିନିଟା ସଭାରେ ତାଙ୍କୁ ଯୋଗ ଦେବାକୁ ହେଲା ଆଜି । ଦେଶର ସର୍ବୋଚ୍ଚ ସାହିତ୍ୟ ସମ୍ମାନ ପାଇବା ପରେ ତାଙ୍କୁ ସଂବର୍ଦ୍ଧନା ଦେବାର ଅନ୍ତ ନାହିଁ ଯେମିତି। ସପ୍ତାହେ ହେଲା ଚାଲିଛି ଏ ପାଲା। ସବୁଠି ତାଙ୍କ ସାହିତ୍ୟିକ କୃତିର ଆଲୋଚନା, ବିଶ୍ଳେଷଣ ଓ ଭୁରି ଭୁରି ପ୍ରଶଂସା। ଯୁଗ ପ୍ରବର୍ତ୍ତକ ବୋଲି ଡ଼ିଣ୍ଡିମ ପିଟା ଚାଲିଥାଏ । ଅନବରତ ଟେଲିଫୋନ୍ ଘଣ୍ଟି, ପ୍ରତିଦିନ ଡାକବାଲା ଦେଇ ଯାଉଥିବା ଗଦାଏ ଗଦାଏ ଲେଖା ଚିଠିର ଉତ୍ତର ଦେଇ ଦେଇ ସେ ନୟାନ୍ତ ହେଇଗଲାଣି। ଏ ସବୁ କ୍ଳାନ୍ତ ଭିତରେ ବି ସଫଳତାର ସ୍ୱାଦ ତାଙ୍କୁ ଆଣି ଦେଉଥିଲା ଅଫୁରନ୍ତ ଉତ୍ସାହ ଓ ଅବ୍ୟକ୍ତ ଉଦ୍ଦୀପନା ।

ଶୋଇବାକୁ ଯିବା ଆଗରୁ ସେଦିନ ପୋଷ୍ଟକାର୍ଡରେ ଆସିଥିବା ଚିଠିଟିକୁ ସେ ପଢ଼ିବାକୁ ଲାଗିଲେ । କିଛି ଗୋଟାଏ ଅନ୍ତତଃ ନ ପଢ଼ିଲେ ନିଦ ହୁଏ ନାହିଁ ତାଙ୍କୁ । ଚିଠିଟି ସେ ଶୋଇ ଶୋଇ ପଢ଼ିବାକୁ ଲାଗିଲେ : ପ୍ରିୟ ମହାଶୟ,ସାରସ୍ୱତ ପ୍ରଣାମ ଜାଣିବେ ଜାଣି ଖୁସୀ ହେବେ ଯେ ପଦ୍ମଗନ୍ଧା ସାହିତ୍ୟ ଅନୁଷ୍ଠାନ ତରଫରୁ ଏକ ସମସାମୟିକ କବିତା ସଂକଳନ ପ୍ରକାଶ ପାଉଛି । ଏଥିରେ ରାଜ୍ୟର ସମସ୍ତ -- କବିମାନଙ୍କୁ ସ୍ଥାନିତ କରାଯିବ । ଏଇ ଅବସରରେ ଆପଣ ଦୁଇଟି କବିତା, ଏକ ପାସ୍‌ପୋର୍ଟ ଫଟୋ ସହିତ ଅଗ୍ରୀମ ୨୦୦ ଟଙ୍କା ନିମ୍ନ ଠିକଣାରେ ପଠାଇବେ ବୋଲି ଆଶା କରୁ । ପ୍ରକାଶ ଥାଉକି, ଲେଖା ପଠାଇବାର ଶେଷ ତାରିଖ ଚଳିତ ମାସ ଶେଷ ରଖାଯାଇଛି । ଇତି ଆପଣଙ୍କର... ।"

ପତ୍ର ପ୍ରେରକଙ୍କ ଠିକଣା ଜାଣିବା ଆଗରୁ କ୍ଳାନ୍ତ ଆଖି ନଇଁ ଆସୁଥିଲା ତାଙ୍କର । ସେ ମନକୁ ମନ ଯିମିତି ବିଳବିଳଉଥିଲେ : ଛି, ମୋ ଲେଖକ ଜୀବନକୁ ଧିକ୍ ।"

❑❑❑

# ନିଉଜ୍

ଷାଠିଏ ବର୍ଷ ବୟସରେ ନିଜ ଜନ୍ମମାଟିରେ ପାଦ ଦେବା ବେଳକୁ ସେ ପୃଥିବୀର ପ୍ରାୟ ଅଧିକାଂଶ ବଡ଼ ତଥା ପ୍ରଗତିଶୀଳ ଦେଶ ଘୁରି ସାରିଥିଲେ । ଯେହେତୁ ସେ ଅନେକ ଦେଶର ସାଂସ୍କୃତିକ ତଥା ସାହିତ୍ୟିକ ପାଣିପାଗ ସହ ପରିଚିତ ହେଇ ଯାଇଥିଲେ, ତାଙ୍କ ଚିନ୍ତାଧାରାର ଦିଗ୍‌ବଳୟଟି ଥିଲା ବେଶ୍ ସୁଦୂର ପ୍ରସାରୀ । ତା'ର ଝଲକ ତାଙ୍କ ରଚିତ କବିତା, ଗଳ୍ପ,ଉପନ୍ୟାସ ତଥା ସ୍ତମ୍ଭମାନଙ୍କର ବାରି ହେଇ ପଡୁଥିଲା ।

ତାଙ୍କ ମନ ଭିତରେ ୟ୍ୟା ଭିତରେ ବଢ଼ିବାକୁ ଆରମ୍ଭ କରିଥିଲା ଅହଂକାରର ଚାରାଟି । ସେ ଯେଉଁ ସଭା ସମିତିକୁ ଯାଉଥିଲେ, ନିଜର ସମଧର୍ମୀମାନଙ୍କୁ କୁତ୍ସାରଟନା କରୁଥିଲେ ଏବଂ ଲେଖକମାନଙ୍କୁ ହେୟ ଜ୍ଞାନ କରିବା ଆରମ୍ଭ କରି ଦେଇଥିଲେ । ଘଟଣାକ୍ରମେ ଅହେତୁକ ଭାବେ କମି ଆସୁଥିଲା ତାଙ୍କ ଲେଖାମାନଙ୍କରେ ପାଠକ ସଂଖ୍ୟା ତଥା ବୁଦ୍ଧିଦୀପ୍ତ ଭାଷଣମାନଙ୍କର ଶ୍ରୋତା ସଂଖ୍ୟା ।

ଶ୍ରୋତା ତଥା ପାଠକ ସଂଖ୍ୟା ଦିନକୁ ଦିନ ହ୍ରାସ ପାଇବା ଫଳରେ ସେ ଆତଙ୍କିତ ହେଇ ଯାଇଥିଲେ। ତଥାପି ବୟସ୍କମାନଙ୍କୁ ଗାଳିଦେବା ଓ ତରୁଣୀମାନଙ୍କୁ ହେୟଜ୍ଞାନ କରିବା ଭଳି ଅଭ୍ୟାସର ପିଂଜରା ଭିତରୁ ସେ ମୁକୁଳି ପାରୁ ନଥିଲେ ।

ଅନେକ ଦିନ ପରେ ତାଙ୍କୁ ଥରେ ଗୋଟିଏ ସାହିତ୍ୟ ଅନୁଷ୍ଠାନର କର୍ମକର୍ତ୍ତା ଆମନ୍ତ୍ରଣ କଲେ ଜନୈକ କବିଙ୍କ ସଦ୍ୟ ପ୍ରକାଶିତ ବହିଟିକୁ ଉନ୍ମୋଚନ କରିବାକୁ। ସେ ଆସିଲେ ନିର୍ଦ୍ଧାରିତ ସମୟରେ ଓ କାର୍ଯ୍ୟକ୍ରମ ପୂର୍ବ ଯୋଜନାନୁଯାୟୀ ଚାଲିଲା । ପୁସ୍ତକ ଉନ୍ମୋଚନ ପରେ ସେ 'ସାହିତ୍ୟର ଭବିଷ୍ୟତ'କୁ ନେଇ ଲମ୍ବା ଭାଷଣଟିଏ ବି ଦେଲେ। ସଭାଶେଷ ହେବା ପରେ ସେ ନିଜେ ଚାଲି ଆସିଥିଲେ ଉପସ୍ଥିତ ସ୍ଥାନୀୟ ଖବରକାଗଜର ପ୍ରତିନିଧିମାନଙ୍କ ପାଖକୁ ।

: ଆପଣମାନଙ୍କୁ କଷ୍ଟ କରିବାକୁ ପଡିବନି ବୋଲି ମୁଁ ଭାବୁଛି" କହୁ କହୁ ସେ ନିଜ ହାତରେ ପୂର୍ବରୁ ଲେଖିଥିବା ଖବରକାଗଜରେ ପ୍ରକାଶ ପାଇବା ଲାଗି ଉଦ୍ଦିଷ୍ଟ ନିଉଜ୍‌ର ଗୋଟିଏ ଲେଖା ନକଲ ପ୍ରତିନିଧିମାନଙ୍କ ହାତକୁ ସହାସ୍ୟ ବଢ଼ାଇ ଦେଇଥିଲେ ।

ସେ ସଭାସ୍ଥଳ ଛାଡ଼ି ଯିବା ଆଗରୁ ଜଣେକ ଯୁବ ସାମ୍ବାଦିକ ଅନୁଚ୍ଚ ସ୍ୱରରେ ସେ ଦେଇ ଯାଇଥିବା କାଗଜ ଟୁକୁଡ଼ାଟିକୁ ପଢୁଥିଲେ : ଏକ ପୁସ୍ତକ ଉନ୍ମୋଚନ ସଭାରେ ଭାରତର ବିଶିଷ୍ଟ ଲେଖକ, ବୁଦ୍ଧିଜିବୀ ଚିନ୍ତାନାୟକ କଥା ବରିଷ୍ଠ ପ୍ରଶାସକ..."

ଦୂରରୁ ଶୁଣା ଯାଉଥିଲା ତାଙ୍କ କାର୍ ଷ୍ଟାର୍ଟ ହେବାର ଶବ୍ଦ ।

❑❑❑

# ଗଣ୍ଠି

ସେ ଦୁହେଁ ଥିଲେ ଘନିଷ୍ଠ ବନ୍ଧୁ । କିଶୋର ଜୀବନରୁ ଯୌବନକାଳ ଯାଏ ସେମାନଙ୍କ ଅତୁଟ ବନ୍ଧୁତ୍ୱ ହିଁ ଆଖପାଖର ଲୋକଙ୍କ ପାଇଁ ପାଲଟି ଯାଇଥିଲା ଏକ ଉଜ୍ଜ୍ୱଳ ଉଦାହରଣ । ଯଦିଓ ଦୁହେଁ ହିନ୍ଦୁ ଥିଲେ, ମାତ୍ର ଜଣେ ବ୍ରାହ୍ମଣ ଥିଲା ବେଳେ ଆର ଜଣକ ଥିଲା ନିଛକ ହରିଜନ । ଜଣେ ଗୌରବର୍ଣ୍ଣ, ଆଉ ଜଣେ ପିଚୁପରି କଳା ।

ସ୍ନାତକୋତ୍ତର ଶିକ୍ଷା ସମାପ୍ତ ପରେ ବ୍ରାହ୍ମଣ ଯୁବକ ସ୍ଥିର କଲା ନିଜ ପୈତୃକ ବ୍ୟବସାୟରେ ଯୋଗ ଦେବାକୁ, ମାତ୍ର ହରିଜନ ଯୁବକଟି ପ୍ରସ୍ତୁତି ହେଉଥିଲା ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେବା ଲାଗି । ପ୍ରଥମ ଚେଷ୍ଟାରେ ସେ ହୋଇଥିଲା କୃତକାର୍ଯ୍ୟ । ସେ ହିଁ ପ୍ରଥମେ ଆସି ଖବର ଦେଇଥିଲା ତାର ବ୍ରାହ୍ମଣ ବନ୍ଧୁକୁ

: ମୁଁ ଆଇ.ଏ.ଏସ୍. ପାଇଯାଇଛି ।

: ଅନେକ ଅନେକ ଶୁଭେଚ୍ଛା । ଈଶ୍ୱର ତୋର ଇଚ୍ଛା ପୂରଣ କଲେ ।

: ତା ତ ସତ । ଆଜିଠୁଁ ମୁଁ ତୋ ସମାସ୍କନ୍ଧ ହେଲି । ତାହା ହିଁ ମୋ ଖୁସିର କାରଣ ।

ବ୍ରାହ୍ମଣ ଯୁବକଟି ନିଜ ବନ୍ଧୁର ମୁହଁରୁ ଏକଥା ଶୁଣି ଚକିତ ଓ ଆହତ ହେଲା ।

ସେଇ ମୁହୂର୍ତ୍ତରୁ ହିଁ ଛିଣ୍ଡି ଯାଇଥିଲା ତାଙ୍କ ଦୁହିଁଙ୍କୁ ବାନ୍ଧି ରଖିଥିବା ସଂପର୍କର ରଜ୍ଜୁ । ଯାହା ଯୋଡ଼ି ହେଇ ଥିଲେ ବି ଗଣ୍ଠି ଲିଭି ନଥିଲା ।



# ମଧ୍ୟରାତ୍ରୀର କବିତା

ଦିନସାରା ସେ ବ୍ୟସ୍ତ ରହିଲା ତାର ଅଫିସ୍‌ରେ କାମ କରୁଥିବା ସହକର୍ମୀ, ଆତ୍ମୀୟ ସ୍ୱଜନ ଓ ଲେଖାଯୋଖା ବନ୍ଧୁମାନଙ୍କୁ ଟେଲିଫୋନ୍ କରିବାରେ । ଉଲ୍ଲସିତ ହୋଇ ସେ ପ୍ରାୟ ସମସ୍ତଙ୍କୁ ଅନୁରୋଧ କରିଥିଲା ଶୁଣିବାକୁ ତାର କବିତା ଆଜି ରାତିରେ ସ୍ଥାନୀୟ ଦୂରଦର୍ଶନରୁ । ସମସ୍ତେ ଶୁଭେଚ୍ଛା ଜଣାଇବା ସହ ପ୍ରତିଶ୍ରୁତି ଦେଇଥିଲେ ଶୁଣିବେ ବୋଲି କବିତା ।

ସେ ଦିନ ଜାତୀୟ ସ୍ତରରେ କୌଣସି କ୍ରିକେଟ୍ ଖେଳ ନଥିବାରୁ ଦର୍ଶକମାନେ ତା କବିତାର ଆନନ୍ଦ ନେବେ ବୋଲି ତାର ଧାରଣା ହୋଇଥିଲା ।

ଯଦିଓ ଏ କବିତା ପଢ଼ିବା ଲାଗି ତାଙ୍କୁ ୭୫୦ଟଙ୍କା ପାରିଶ୍ରମିକ ମିଳିବ ବୋଲି ସେ ଜାଣିଥିଲା, ମାତ୍ର ଅଢ଼େଇ ହଜାର ଟଙ୍କାରେ ସେ ତାକୁ ମାନିଲା ଭଳି ନାରଙ୍ଗୀ ରଂଗର ଚୂଡ଼ିଦାର ବଜାରରୁ ଖରିଦ୍ କରିଥିଲା ଓ କବିତା ରେକର୍ଡିଂ ବେଳେ ତାକୁ ହିଁ ପିନ୍ଧି ଥିଲା । କବିତାର ଅନ୍ତସ୍ୱର ସହ ତା ପୋଷାକର ଯେମିତି ଏକ ଅଦ୍ଭୁତ ସାମଞ୍ଜସ୍ୟ ଅଛି ବୋଲି ସେ ଭାବୁଥିଲା ।

ଯଦିଓ ସପରିବାରେ ସେ ଟେଲିଭିଜନ୍‌ରୁ ତାର କବିତା ପାଠ କରିବାର ଦୃଶ୍ୟ ସେ ମଧ୍ୟରାତ୍ରିରେ ଦେଖିଲା ମାତ୍ର ପରଦିନ ଗୋଟିଏ ବି ଶୁଭେଚ୍ଛା ମୂଳକ ଟେଲିଫୋନ୍ ତା ପାଖକୁ ଆସିଲା ନାହିଁ କାହାରି ପାଖରୁ । ଅଚାନକ ମର୍ମାହତ ଓ ଦୁଃଖି ହୋଇଯିବା ସହ ଅନେକ ଦିନଯାଏ ଗୁମ୍‌ସୁମ୍ ରହିଲା ।

ମଧ୍ୟରାତ୍ରିରେ ତାର କବିତା ପ୍ରସାରିତ ହେବାର ପ୍ରାୟ ଦୁଇ ସପ୍ତାହ ପରେ ସେ କିଛି ବନ୍ଧୁଙ୍କ ପାଖରେ ଯୁକ୍ତି କରିବା ଶୁଣାଗଲା : ଏ ଜାତିର ସମସ୍ତଙ୍କୁ ଉନ୍ନତି ପାଇଁ ସମସ୍ତଙ୍କୁ ମଧ୍ୟରାତ୍ରି ପରେ ଶୋଇବା ସହ ପ୍ରାତଃକାଳରୁ ଉଠିବାକୁ ଅଭ୍ୟାସ କରିବାକୁ ହେବ ।

ଗୋଟିଏ ବହୁ ପ୍ରତିକ୍ଷିତ ଦର୍ଶନ ସରଳ ଭାଷାରେ ପ୍ରକାଶିତ କରି ଦେଇଥିବାରୁ ଉଲ୍ଲାସରେ ସେ ଗୁଣୁ ଗୁଣୁ ହେବାକୁ ଆରମ୍ଭ କଲା ଖୁସିରେ ।



# ସ୍ୱାମୀ-ସ୍ତ୍ରୀ

ଟ୍ରେନ୍ ଚାଲିଥାଏ କେବେ ଧୀରେ, ପୁଣି କେବେ କ୍ଷିପ୍ର ଗତିରେ । ଅପରାହ୍ନ । ଶୀତଦିନ । ହଠାତ୍ ଗୋଟେ ଛୋଟିଆ ଷ୍ଟେସନ୍‌ରୁ ଉଠିଲେ ବନ୍ଧୁକଧାରୀ ଦଳେ ପୋଲିସ୍ । ଛଅ କି ସାତ । ଯାତ୍ରୀମାନଙ୍କୁ ଟିକେଟ୍ ମାଗିଲେ । ବର୍ଥ ନମ୍ବର ୪୯ ଆଉ ୫୨ । ବସିଥିଲେ ଜଣେ ପୁରୁଷ ଆଉ ଜଣେ ନାରୀ । ନାରୀଟି ପିନ୍ଧିଥାଏ ଆବଶ୍ୟକତାଠୁ ବେଶୀ ସୁନା ଗହଣା । ପୋଲିସ୍ ପ୍ରଥମେ ନାରୀଟିକୁ ମାଗିଲେ ଟିକେଟ୍ । ତା ପରେ ଜଣେ ଯୁବକ ପିସ୍ତଲ ଦେଖାଇ କହିଲା ଦେଇଦେବା ପାଇଁ ସବୁ ସୁନା ଗହଣା । ସ୍ତ୍ରୀଟି ଡରି ମରି ସବୁତକ ଗହଣା ଧରାଇ ଦେଲା ସେମାନଙ୍କୁ । ପୋଲିସ୍‌ର ପୋଷାକରେ ସେମାନେ ଥିଲେ ଗୋଟେ ଡକାୟତଦଳ । ସାମ୍ନାରେ ବସିଥିବା ପୁରୁଷଟି ପାଲଟିଯାଇଥାଏ ମୂକ । ସେମାନେ ତାକୁ ସୁଟକେଶ୍ ଖୋଲିବାକୁ କହିଲେ । ପୁରୁଷଟି ତୁରନ୍ତ ସୁଟ୍‌କେଶ୍ ଖୋଲିଲା ଏବଂ ତା ଭିତରେ ଭର୍ତ୍ତି ହେଇଥିବା ଚକ୍‌ଚକିଆ ହଜାରେ ଟଙ୍କିଆ ନୋଟ୍ ବିଡା ମାନ ଧରେଇ ଦେଲା ଜଣେ ନିଶୁଆ ବନ୍ଧୁକଧାରୀକୁ ।

ସେମାନେ ତୁରନ୍ତ ଓହ୍ଲାଇ ପଡିଲେ ପରବର୍ତ୍ତୀ ଷ୍ଟେସନ୍‌ରେ । ସେମାନଙ୍କୁ ପଳାଇଯିବା ଦେଖି ପୁରୁଷଟି ଠୋ ଠୋ ହେଇ ହସିଲା, ତା ସହ ଯୋଗ ଦେଲା ନାରୀଟି । ପୁରୁଷଟି କହିଲା ସେମାନେ ଆଦୌ ଟେର୍ ପାଇଲେନି ଯେ ଆମେ ଦୁହେଁ ସ୍ୱାମୀ ସ୍ତ୍ରୀ ବୋଲି ।

ନାରୀଟି କହିଲା ନକିଲି ସୁନା ପୁଳାକ ନେଇ କ'ଣ କରିବେ କେଜାଣି ? ପୁରୁଷଟି ଏଥର ନାରୀକୁ ଶୁଣେଇଲା: ଦେଖିବ କାଲି ସକାଳ ସୁଦ୍ଧା ସେମାନେ ଆରେଷ୍ଟ ହେବେ ନକଲି ନୋଟ୍ କାରବାରରେ ସଂପୃକ୍ତ ବୋଲି ଆଉ ଖବର କାଗଜମାନଙ୍କରେ ତାଙ୍କ ଫଟୋ ବି ଛପାଯିବ ।

❑❑❑

# ମହୁମାଛି

ଖୁବ୍ ଶଙ୍କିତ ଅବସ୍ଥାରେ ବୁଢ଼ା ତହସିଲ୍‌ଦାର ବାବୁ ଜିଲ୍ଲାପାଳଙ୍କ ଶୀତତାପ ନିୟନ୍ତ୍ରିତ କୋଠରୀ ଭିତରକୁ ପଶିବା ସଙ୍ଗେ ସଙ୍ଗେ ମନେ ମନେ ଗୁଣି ହେଲେ 'ହନୁମାନ ଚାଳିଶା' । ଘର୍ମ ବିନ୍ଦୁ ସବୁ ଫୁଟି ଉଠୁଥାଏ କପାଳରେ ଏବଂ ନିଜ ଅଜାଣତରେ ଯା ଆସ କରୁଥାନ୍ତି ଦୀର୍ଘ ନିଃଶ୍ୱାସ ପ୍ରଶ୍ୱାସ। ତହସିଲ୍‌ଦାର ବାବୁ ପାଟି ଖୋଲିଲେ ନମସ୍କାର ଜଣାଉ ଜଣାଉ ।

:ଜିଲ୍ଲାର ସବୁ ଗଳିକନ୍ଦି ବୁଲି ଗଲେଣି ଲୋକେ, କେଉଁଠି ବି ସାର୍ ଛୋଟ ମହୁଫେଣାଟେ ନାହିଁ ।

ଜିଲ୍ଲାପାଳ ଯଥା ସମ୍ଭବ ଗାମ୍ଭୀର୍ଯ୍ୟରେ ଥରେ ତାଙ୍କ ଆଡକୁ ଚାହିଁ ରହିଲେ। କଲିଂବେଲ୍‌ର ବଟମ ଚିପିଲେ । ହାତରେ ନୋଟ୍ ବୁକ୍ ଧରି ପ୍ରବେଶ କଲେ ଷ୍ଟେନୋବାବୁ । ସେ ତାଙ୍କୁ ଡିକ୍ଟେସନ୍ ଦେଲେ। ମାତ୍ର ଷ୍ଟେନୋବାବୁ ରୁମ୍‌ରୁ ବାହାରି ଗଲା ପରେ ତହସିଲ୍‌ଦାର ଆଶ୍ଚର୍ଯ୍ୟ ହେଇ ଜିଲ୍ଲାପାଳଙ୍କୁ 'ଏ କ'ଣ କରୁଛନ୍ତି ସାର୍ !' ମୁଦ୍ରାରେ ଚାହିଁ ରହିଲେ । ଜିଲ୍ଲାପାଳ ମୁରୁକି ହସିଲେ।

: ବହୁଦିନ ଧରି ଆପଣ ମୋର ସେବା କରିଛନ୍ତି, ସେଥିପାଇଁ ଧନ୍ୟବାଦ।"

ଅନ୍ୟାନ୍ୟ କାମ ସହିତ ତହସିଲଦାରଙ୍କର ଏକ ମୁଖ୍ୟ କାମ ଥିଲା ଜିଲ୍ଲାପାଳଙ୍କ ବଙ୍ଗଳାକୁ ପ୍ରତିଦିନ ଏକ ଲିଟର ମହୁ ଯୋଗାଇବା। ସେଥିପାଇଁ ସେ ଜିଲ୍ଲାର କୋଣ ଅନୁକୋଣରୁ ମହୁସଂଗ୍ରହ କରିବା ପାଇଁ ଲୋକ ରଖିଥିଲେ। କାରଣ ପିଇବା ସହ ଜିଲ୍ଲାପାଳ ନିଜ ଶରୀରରେ ମହୁ ମାଲିସ୍ କରୁଥିଲେ ସବୁଦିନ ।

ସେଥିପାଇଁ ତହସିଲ୍‌ଦାର କଥା ଶୁଣିବା ପରେ ସେ ନିଜର ବ୍ୟକ୍ତିଗତ ଅସୁବିଧା କଥା ଉଲ୍ଲେଖ କରି ରାଜସ୍ୱ ସଚିବଙ୍କୁ ଲେଖିଥିଲେ ଏକ ଅନୁରୋଧ ପତ୍ର ତାଙ୍କୁ ତୁରନ୍ତ ବଦଳି କରିବା ଉଦ୍ଦେଶ୍ୟରେ ।



# ଛାଇ

ପ୍ରାୟ ଦଶ ହଜାର ଲୋକଙ୍କ ସକାଳୁ ସକାଳୁ ସମାଗମ ହୋଇଥାଏ ଷ୍ଟାଡିୟମରେ । ନିଜ ନିଜ ଆସନରେ ବସି ସେମାନେ ସ୍ୱାମୀଜୀଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରିଥାନ୍ତି । ଚତୁର୍ଦ୍ଦିଗରେ ଥିବା ଆଧୁନିକ ସାଉଣ୍ଡ ସିଷ୍ଟମରେ ପ୍ରସାରିତ ହେଉଥାଏ ବେଦମନ୍ତ୍ର ଉଚ୍ଚାରଣ, ଦର୍ଶକମାନଙ୍କ ଉଦ୍ଦେଶ୍ୟରେ ଚାରିଆଡେ ବିଛେଇ ହୋଇଥାଏ ଟିଭି, ଯାହାଦ୍ୱାରା ସ୍ୱାମୀଙ୍କ ଦ୍ୱାରା ଦେଖା ଯାଉଥିବା ବିଭିନ୍ନ ଆସନ ଉପସ୍ଥିତ ସମସ୍ତ ବ୍ୟକ୍ତି ଅନାୟସରେ ଦେଖିପାରିବେ, ଅନୁକରଣ କରିପାରିବେ ।

ଅନୁଷ୍ଠାନର ସଂଚାଳକ ସ୍ୱାମୀଜୀଙ୍କ ସଂକ୍ଷିପ୍ତ ପରିଚୟ ଦେବାଛଳରେ କହିଲେ: ସ୍ୱାମୀଜୀ ଆଇ.ଆଇ.ଟି. ଖଡଗପୁରରୁ ପାଶ୍ କରିବା ପରେ ଆମେରିକାରେ ଏମ୍.ଆଇ.ଟି.ରେ ପଢ଼ିବାକୁ ଗଲେ । ସେଠାରୁ କୃତିତ୍ୱର ସହ ପାଶ୍ କରିବା ସହ ସ୍ୱାମୀଜୀଙ୍କୁ ଏକ ସଂସ୍ଥାରେ ଯୋଗ ଦେବା ଲାଗି ବାର୍ଷିକ ଏକ କୋଟି ଟଙ୍କା ଦରମା ଯାଚିଥିଲେ ବି ସ୍ୱାମୀଜୀ ତାକୁ ପ୍ରତ୍ୟାଖ୍ୟାନ କରି ଫେରି ଆସିଲେ ଭାରତ ଓ ପ୍ରାୟ ପଚିଶି ବର୍ଷ କାଳ ହିମାଳୟ ତଥା ଦେଶର ଅନ୍ୟାନ୍ୟ ବୟସ୍କ ସାଧୁଙ୍କ ସଂସ୍ପର୍ଶରେ ରହିବା ପରେ ଜଗତର କଲ୍ୟାଣ ପାଇଁ ଆଗେଇ ଆସିଛନ୍ତି ।

: ଯୋଗଶିକ୍ଷା ଦେବା ଆଗରୁ ଆପଣମାନଙ୍କର ସ୍ୱାମୀଜୀଙ୍କୁ କିଛି ପ୍ରଶ୍ନ ପଚାରିବାର ଅଛି କି ? ସଂଚାଳକ ଶ୍ରୋତାମାନଙ୍କ ଉଦ୍ଦେଶ୍ୟରେ କହିଲେ ।

ତାଙ୍କ ପ୍ରଶ୍ନ ଶୁଣି ଜଣେ ଦର୍ଶକ  ନିଜ ଆସନରୁ ଉଠି ଠିଆ ହେଲା ଏବଂ ପ୍ରଶ୍ନ ପଚାରିବ ବୋଲି ଇଙ୍ଗିତ୍ କଲା । ଆୟୋଜକଙ୍କ ତରଫରୁ ତତ୍‌କ୍ଷଣାତ୍ ତାଙ୍କୁ ଯୋଗାଇ ଦିଆଗଲା ହ୍ୟାଣ୍ଡ୍ ସ୍ପିକର୍ । ଭଦ୍ର ବ୍ୟକ୍ତି ପ୍ରଶ୍ନକଲେ ଏଥର: ଏ ରାସ୍ତାରେ ଯଦି ସ୍ୱାମୀଜୀଙ୍କର ଆସିବାର ଥିଲା ତେବେ ସ୍ୱାମୀଜୀ ଆଇ.ଆଇ.ଟି.ର ଗୋଟେ ସିଟ୍ ସହ ଏତେ ଗୁଡାଏ ସମୟ ନଷ୍ଟ କରିବା କ'ଣ ଦରକାର ଥିଲା ?

ସ୍ୱାମୀଜୀ ତାଙ୍କ ସ୍ୱାଭାବିକ୍ ଧୀର ସ୍ୱରରେ କହିଲେ : ଛାଇରୁ ହିଁ ବାରି ହେଇଯାଏ ମଣିଷ ଆଉ ଭୂତ ଭିତରେ । କାରଣ ଭୂତର ଛାଇ ନଥାଏ, ଠିକ୍ ସେମିତି ଏ ଡିଗ୍ରୀ ଅଥବା ପଦବୀ ଗୁଡାକ ସବୁ ମୋର ଛାଇ ସଦୃଶ । ଏ ସବୁ ନଥିଲେ ଆପଣମାନେ ମୋତେ ଭିକ ବି ଦେଇନଥାନ୍ତେ । ତେବେ ଆମ ଭିତରେ ଏତିକି କେବଳ ଫରକ ଯେ ମୁଁ ସେ ଛାଇର କବଳରୁ ଖସି ପଳାଇ ଆସିଛି ।

ସମବେତ ଶ୍ରୋତାମଣ୍ଡଳୀ ମୁଗ୍ଧ ହେଇ ତାଂକୁ ଶୁଣିବା ସହ ଅପେକ୍ଷା କରିଥାଏ ତାଙ୍କ ପରବର୍ତ୍ତୀ ନିର୍ଦ୍ଦେଶକୁ ।



# ବଢ଼ିପାଣି

୧୯୮୨ ମସିହାର କଥା, ପାଠପଢ଼ା ଶେଷ ହେବା ପରେ ଚାକିରୀ ପାଇବା ଆଗରୁ ମୁଁ ଗାଁରେ ଥାଏ । ଦିନେ ସକାଳୁ ମୋର ଜଣେ ବାଲ୍ୟବନ୍ଧୁ ଆସି ଖବର ଦେଲା: ବଢ଼ିପାଣି ଆସିଛି, ଦେଖିବାକୁ ଯିବା କି ?" ପ୍ରାୟ ପାଞ୍ଚ ଦିନଧରି ନଦୀରେ ବନ୍ୟା ଆସି ଆଖପାଖ ଗାଁରେ ପାଣି ଆସି ଯାଇଥିଲା । କୌତୁହଳ ବଶତଃ ମୁଁ ତା ସହ ବଢ଼ିପାଣି ଦେଖିବାକୁ ଗଲି ସାଇକେଲ୍‌ରେ ବସି । ବିସ୍ତୃତ ଜଳରାଶିକୁ ଦୂରରୁ ଦେଖି ପ୍ରାୟ ଦୁଇତିନି ଘଣ୍ଟା ପରେ ଘରକୁ ଫେରି ଦେଖିଲି ବୋଉ ଚୂଲିରେ ମୁଢ଼ି ଭାଜୁଛି, ଆଉ କାନ୍ଦୁଛି ।

ବଢ଼ିପାଣି ଆସୁଛି ବୋଲି ସେ ମୋ ପ୍ରଶ୍ନର ଉତ୍ତର ଦେଉ ଦେଉ ମୁଢ଼ି ଭାଜି ଚାଲିଥାଏ । ମୁଁ ବାଡ଼ିପଟକୁ ଯାଇ ଦେଖିଲି ପଛପଟର ପୋଖରୀର ଜଳସ୍ତର ଫୁଲି ଯାଇଛି ଗର୍ଭିଣୀ ଗାଈର ପେଟପରି। ଧୀରେ ଧୀରେ ପାଣି ମାଡ଼ି ମାଡ଼ି ଆସୁଛି ଆମ ଘରକୁ ପଛରୁ ।

ଏକଥା ଆସି ମୁଁ ଜେଜେବାପାଙ୍କୁ କହିଲି। ଜେଜେବାପା ସେତେବେଳକୁ ଅନ୍ଧ ହେଇ ଯାଇଥାନ୍ତି । ପଞ୍ଚସ୍ତରୀ ବର୍ଷରେ ବି ତାଙ୍କ ମୁଣ୍ଡରୁ ଖସି ନଥାଏ ଅହଂକାରର ଟୋପି । ସେ ଜବାବ୍ ଦେଲେ : ମୁଁ ଥାଉ ଥାଉ ମୋ ଘରେ ବଢ଼ିପାଣି ପଶିଯିବ ?’" ତାଙ୍କର ଅହଂକାର ପଣିଆରେ କିଛି ବୋକାମୀ ଫେଣ୍ଟି ହୋଇ ରହିଥିଲା। ତାଙ୍କ କଥାରେ ମୁଁ କୁତ୍ କୁତ୍ ହେଉଥାଏ । ପ୍ରାୟ ଘଣ୍ଟାକ ଭିତରେ ଆମେ ସମସ୍ତେ ଘର ଛାଡ଼ିଦେଲୁ । ବୋଉ ବି ସାଙ୍ଗରେ ମୁଢ଼ିଡବା ଧରି ଆମ ସହ ଆସିଲା। ମାତ୍ର ଜେଜେବାପାଙ୍କୁ କକେଇ ଦଦେଇମାନେ ଆସି ଯେତେ ବୁଝାଇଲେ ବି ସେ ମାନୁ ନଥାନ୍ତି । ଶେଷରେ ଅନ୍ୟମାନେ ବୁଝାଇବାପରେ ବିଫଳ ହେବା ପରେ ତାଙ୍କୁ ଜଣେ ଟେକି ନେଇଗଲେ ଉଚ୍ଚଯାଗାରେ ଥିବା ପଡୋଶୀଙ୍କ ଘରକୁ। ଜେଜେବାପା ଘର ଛାଡ଼ିବା ପରେ ବଢ଼ିପାଣି ବନ୍ଧ ଡେଇଁ ଆମ ଘରେ ପଶିଲା । ଘରର ସବୁ ଆସବାପତ୍ର ତା ପେଟରେ ରହିଗଲା। ମୋତେ ପ୍ରଥମ ଥର ପାଇଁ ଲାଗିଲା ଭଲ ଥିଲା ଜେଜେବାପା ଅନ୍ଧ ହେଇ ଯାଇଥିଲେ। ବଢ଼ିପାଣି ତାଙ୍କ ଅହଂକାରକୁ ଭାଙ୍ଗିବାରେ ବିଫଳ ହେଇଥିଲା।

ବଢ଼ିପାଣିରେ ଆମର ସବୁକିଛି ଭାସି ଯାଇଥିଲା କେବଳ ଜେଜେବାପାଙ୍କ ଅହଂକାରକୁ ଛାଡ଼ି ।



# ପଥରର ପ୍ରାର୍ଥନା

ସହରର ସୁଦୃଶ୍ୟ ପାର୍କର ଗୋଟେ କୋଣରେ ଅନେକ ଦିନରୁ ପଡ଼ିଥିବା ପଥରଟି ଦିନେ ଈଶ୍ୱରଙ୍କୁ ପ୍ରାର୍ଥନା କଲା : ଆଉ କେତେକାଳ ପ୍ରଭୁ ଏ ଦୁର୍ଦ୍ଦଶା ଭୋଗିବି ?

ଉତ୍ତରରେ ଈଶ୍ୱର ତାକୁ କ'ଣ କହିଲେ ଜଣାନାହିଁ। ତେବେ ଖୁବ୍ ହତୋତ୍ସାହ ଦେଖାଯାଉଥିଲା ପଥରଟି। ଯା' ଭିତରେ ତା'ର ଦୁର୍ଦ୍ଦଶା ଦ୍ୱିଗୁଣିତ ହୋଇଯାଇଥିଲା। ସକାଳୁ ସକାଳୁ ସହରରେ ସମ୍ଭ୍ରାନ୍ତ ଘରମାନଙ୍କରେ ସାରାଦିନ ବନ୍ଦୀର ଜୀବନ ଯାପନ କରୁଥିବା କୁକୁରମାନେ ପ୍ରାତଃ ଭ୍ରମଣରେ ଆସି ସେଇ ପଥର ଉପରେ ମଳ ଓ ମୂତ୍ର ତ୍ୟାଗ କରୁଥିଲେ। ଦିନେ ଦିନେ ରାତିରେ ଅବୈଧ ପ୍ରେମର କରୁଣ ପରିସମାପ୍ତି ଆଣିବାକୁ ଯାଇ ଗର୍ଭବତୀ ପ୍ରେମିକାର ମଥାରେ ଆଘାତ ଦେବାଲାଗି କ୍ରୂର ପ୍ରେମିକମାନେ ଏଇ ପଥରର ସାହାଯ୍ୟ ନେଉଥିଲେ। ସାରା ରାଜ୍ୟରେ ଚହଳ ପକାଇ ଏକ ମାନସିକ ରୋଗୀ କିପରି ସେଇ ପଥରର ସହାୟତା ନେଇ ଅନେକ ଲୋକଙ୍କ ପ୍ରାଣ ନେଇଥିଲା, ସେ ରହସ୍ୟ ଉଦ୍‌ଘାଟନ ପାଇଁ ରାଜ୍ୟର ସମସ୍ତ ଖବର କାଗଜ ଅନେକ ପୃଷ୍ଠା ବ୍ୟୟ କରି ସାରଥିଲେ ସେତେବେଳକୁ। ପଥରଟି ଏଥର କାକୁତିମିନତି ହୋଇ ପ୍ରାର୍ଥନା କଲା : ମୋତେ ଉଦ୍ଧାର କରନ୍ତୁ ପ୍ରଭୁ, ଏ ବିପତ୍ତିରୁ। ବୋଧହୁଏ ଈଶ୍ୱର ତା' କଥା ଶୁଣିଲେ।

କିଛିଦିନ ପରେ ଜଣେ ଭାସ୍କର୍ଯ୍ୟ ଶିଳ୍ପୀ ସେ ପଥରକୁ ଚିହ୍ନିପାରି ନିଜ ଘରକୁ ନେଇଗଲା। ବେଶ୍ ସଫା ସୁତୁରା କରିବା ପରେ ତା' ନିହାଣ ମୁନରେ ପଥରଟିକୁ ଈଶ୍ୱରଙ୍କ ଏକ ଚେହେରାରେ ରୂପାନ୍ତରିତ କଲା, ଯାହା ଏବେ ପୂଜା ପାଉଛି ସହରର ଏକ ସମ୍ଭ୍ରାନ୍ତ ମନ୍ଦିରରେ।





ଓଡ଼ିଆ ମିନିଗଳ୍ପର ଜନକ ବ୍ରହ୍ମାନନ୍ଦ ପଣ୍ଡାଙ୍କ ପରେ ଏଇ ଅବହେଳିତ ବିଭାଗଟିକୁ ଜୀବନ୍ୟାସ ଦେବା ସହ ଏହାକୁ ଆହୁରି ଉର୍ଦ୍ଧ୍ୱମୁଖୀ ତଥା ଅର୍ଥପୂର୍ଣ୍ଣ କରିବାରେ ମନୁ ଦାଶଙ୍କ ନିଷ୍ଠା ସର୍ବାଦୌ ପ୍ରଶଂସନୀୟ। ବିଂଶ ଶତାବ୍ଦୀର ବିଶିଷ୍ଟ ଔପନ୍ୟାସିକ ୟ୍ୟାର୍ଣ୍ଣେଷ୍ଟ ହେମିଙ୍ଗ୍‌ୱେଙ୍କ ଛଅଟି ଶବ୍ଦରେ ଲିଖିତ ମିନିଗଳ୍ପ **'For sale : baby shoes, never worn'**ଠାରୁ ଆରମ୍ଭ କରି ଭାରତୀୟ ସାହିତ୍ୟର ହିନ୍ଦୀ ତଥା ଉର୍ଦ୍ଦୁ ସାହିତ୍ୟରେ ମିନିଗଳ୍ପ ବେଶ୍ ଆଦୃତ ହୋଇଥିବା ବେଳେ ଓଡ଼ିଆ ଭାଷାରେ ଏହା ଖୁବ୍ ଅବହେଳିତ ବୋଲି ଆମର ଧାରଣା। ଉର୍ଦ୍ଦୁ ସାହିତ୍ୟରେ ମଣ୍ଟୋ, ଇଂରାଜୀରେ ଲିଡ଼ିଆ ଡେଭିସ୍, ହିନ୍ଦୀ ସାହିତ୍ୟରେ ଶ୍ରୀଲାଲ୍ ଶୁକ୍ଳା, ଉଦୟ ପ୍ରକାଶଙ୍କ ମିନିଗଳ୍ପ ଖୁବ୍ ଚର୍ଚ୍ଚିତ ହେବା ସହ କାହାଣୀ ଧାରାରେ ଏକ ସମୃଦ୍ଧ ଦିଗ୍‌ବଳୟକୁ ଉନ୍ମୋଚନ କରିବାରେ ସହାୟକ ହୋଇଥିବା ବେଳେ ଓଡ଼ିଆ ସାହିତ୍ୟରେ ଏହା ସମ୍ଭ୍ରାନ୍ତ ସ୍ଥାନ ପାଇବ ବୋଲି ଆମର ଆଶା।

ଏଠି ଉଲ୍ଲେଖ କରିବା ସମିଚୀନ ହେବ ଯେ ମନୁ ଦାଶଙ୍କ ଏଇ ମିନିଗଳ୍ପ ସଂକଳନ 'ଜଣେ ଆତଙ୍କବାଦୀ ସହ ଗୋଟିଏ ସନ୍ଧ୍ୟା'ରେ କୌଣସି ଗଳ୍ପର ଚରିତ୍ରର ନାମକରଣ ହୋଇ ନାହିଁ। ଏହା କେବଳ ଓଡ଼ିଆ ଗଳ୍ପ ନୁହେଁ ଭାରତୀୟ ଗଳ୍ପ ଧାରାରେ ଏକ ଅଭିନବ ପ୍ରୟାସ ହେତୁ ଲେଖକ ଧନ୍ୟବାଦର ପାତ୍ର।

-ପ୍ରକାଶକ

